ସିକ୍ମୀ—ବୈଦେ. ବି [ ଫା ]—ଅଧୀନ ପ୍ରକାର ଅଧିକାର—
Sik-mi Subordinate interest; an under
सीकीमी सिकमी tenure. ବୈଦେ.
ବିଣ—ଜମିଦାର ବା ସ୍ୱତ୍ୱାଧିକାରୀର ଅଧୀନ—
Subordinate; sub ( tenant ); holding a subordinate tenure. [ଯଥା—ଶିକ୍ମୀ ଜମିଦାରୀ; ସିକ୍ମୀ ରଇତ । ]

ସିକ୍ମୀ ଗଉଣ୍ଟିଆ—ପ୍ରାଦେ [ସମ୍ବଲପୁର] ବି—ଗଉଣ୍ଟିଆ ଥିବା ଗ୍ରାମର
Sik-mi gauntiā ଅନ୍ତର୍ଗତ ସ୍ୱତ୍ୱାଧିକାରୀ ବ୍ୟକ୍ତି (ସମ୍ବଲପୁର ମାନୁଆଲ୍—୧୯୨୮)—Sub proprietor of lands in a gaontiali village.

ସିକ୍ମୀ ଜମିଦାରୀ—ଦେ. ବି—ଜମିଦାରୀର ଅଧୀନ ଜମିଦାରୀ—
Sik-mi jamidāri A Sikmi Zamidndari.
(ସିକ୍ମୀ ମାହାଲ—ଅନ୍ୟରୂପ)
सीकमी जमीदारी सिकमी जमिदारी

ସିକ୍ମୀ ପଟା(ଟ୍ଟା)—ଦେ. ବି—ସବ୍‌ଲିଜ୍ ରଇତକୁ ଦିଆଯିବା ପଟ୍ଟା—
Sik-mi paṭā(ṭṭā) A sub lease.
सीकमी पाटा सिकमी पटा

ସିକ୍ମୀ ପ୍ରଜା—ଦେ. ବି—ରଇତର ଅଧୀନ ରଇତ—A sub-lessee;
Sik-mi prajā a sub-tenant; an under-tenant.
[ସିକ୍ମୀ ରଇ(ଏ,ୟ)ତ—ଅନ୍ୟରୂପ]
सीकमी रायत सिकमी प्रजा

ସିକ୍ମୀଦାର—ବୈଦେ. ବି—ସ୍ୱତ୍ୱାଧିକାରୀର ବା ରଇତର ଅଧୀନ
Sik-midār ସ୍ୱତ୍ୱାଧିକାରୀ—Holder of a subordinate interest, a sub-lessee-
सीकमीदार सिकमीदार

ସିକ୍‌ଲା(ଲି)—ପ୍ରାଦେ (ଖଡ଼ିଆଳ) ବି—ଶିକୁଳି—
Sik-lā(li) [ସିକୁଲ୍—ଅନ୍ୟରୂପ] Chain.

ସିକ—ଦେ. ବି [ବଣିଆ ଶବ୍ଦ]—ତାରକସୀ କାମର ଅଳଙ୍କାରପ୍ରଭୃତିରେ
Sika ଯେଉଁ ତାରକୁ ପ୍ରଧାନ କରି ତାହାର ବଳରେ ଅନ୍ୟାନ୍ୟ ଅଂଶ ଗଢ଼ା ହୁଏ—The main wire from which other finer wires radiate in a filigree work. ବୈଦେ. ବି ( ଫା ସୀକ୍ )
सिक् पतलालोहेकाछड़ ଲୁହାର ସରୁ ଛଡ଼—Iron rod.

ସିକଞ୍ଜା—ବୈଦେ. ବି (ଫା)—ବନ୍ଧା ବହି ଉପରେ ଚାପ ଦେବାର
Sikañjā ଯନ୍ତ୍ର ବିଶେଷ—An instrument used to
सिकंजा सिकंजा press bound books. [କୃ-ଏହା ସାହାଯ୍ୟରେ ବହିର ଧାର ମଧ୍ୟ କଟା ହୁଏ । ଅଗେ ଓଡ଼ିଶାରେ ବହି କାଟିବା କାର୍ଯ୍ୟ ଏହାର ଦ୍ୱାରା ସବୁ ପ୍ରେସରେ ହେଉଥିଲା । ମାତ୍ର ଏବେ କଟା କଳ(Cutting machine) ର ସୃଷ୍ଟି, କଟାକାର୍ଯ୍ୟ ସିକଞ୍ଜାର ବ୍ୟବହାରକୁ ଗ୍ରାସକରି ଉଠାଇ ଦେଲାଣି ।]

ସିକତା—ସଂ. ବି (ସିକ୍ ଧାତୁ—ଛିଞ୍ଚିବା+କର୍ମ ଅତ+ଆ)—୧ ।
Sikatā ବାଲୁକା; ବାଲି (ସ୍ତ୍ରୀଲିଙ୍ଗ ବର୍ଣ୍ଣ)—1. Sand.
[ଦ୍ର—ଏ ଅର୍ଥରେ ସିକତା ଶବ୍ଦ ସଂସ୍କୃତରେ ନିତ୍ୟ ବହୁବଚନାନ୍ତ] ୨ । ବାଲିଆ ଭୂଇଁ; ବାଲୁକାମୟ ଭୂମି (ମେଦିନୀ)—2. Sandy soil. ୩ । ଶର୍କରା; ଚିନି—3. Sugar.

ସିକତାବାନ୍—ସଂ. ବିଣ (ସିକତା+ଅଛି ଅର୍ଥରେ ବତ୍; ସିକତା
Sikatābān ବତ୍ ଶବ୍ଦର ୧ମା. ୧ବ)—ସିକତିଳ; ବାଲୁକା-
(ସିକତାବତୀ—ସ୍ତ୍ରୀ) ମୟ—Sandy; full of sand.

ସିକତାମୟ—ସଂ. ବିଣ—ବାଲୁକାମୟ—Sandy. ସଂ. ବି—
Sikatāmaya ୧ । ବାଲୁକାମୟ ତଟ—1. Sandy
[ସିକତାମୟୀ—ସ୍ତ୍ରୀ] bank ୨ । ଯେଉଁ ଦ୍ୱୀପର ଉପକୂଳ କେବଳ ବାଲୁକାପୂର୍ଣ୍ଣ—2. An island with sandy shore.

ସିକତିଳ—ସଂ. ବି (ସିକତା+ସ୍ୱାର୍ଥେ ଇଲ)— ସିକତାମୟ; ବାଲୁକା-
Sikatila ମୟ—Sandy.

ସିକନ୍ଦର୍—ଦେ. ବି (ନାମ)—ସେକନ୍ଦର୍ (ଦେଖ)—
Sikandar Sekandar (See)
[ସିକନ୍ଦର୍ ବଦସା(ବାଦସାହା)—ଅନ୍ୟରୂପ]

ସିକଲ୍—ବୈଦେ. ବି (ଫା; ଶକଲ୍; ତୁଳନା ସଂ. ଶିକ୍ଷା)—ମୁହଁର
Sikal ଚେହେରା—Facile expression; mien;
चेहेरा शकल bearing.

ସିକଲ୍ ଖସି ପଡ଼ିବା—ଦେ. ବି—ମୁହଁର ଚେହେରା ବଦଳି ହେବା;
Sikal khasi paṛdibā ମୁହଁ ଶୁଖିଯିବା—State of be-
মুখফ্যাকাসে হওয়া शकलजानीचाहोना ing browbeaten.
[ସିକଲ୍ ଖସିଯିବା—ଅନ୍ୟରୂପ]

ସିକ(କା, ଖ)ସ୍ତ—ବୈଦେ. ବି (ଫା. ସିକସ୍ତ୍—ଭଗ୍ନ ଦୁର୍ଦ୍ଦଶାଗ୍ରସ୍ତ )—
Sika(kā,kha)sta ମୂଳ ସଂ. ଶୁଷ୍କ) ୧ । କ୍ଷତି—1.Damage
क्षति सिकस्त ୨ । ବିନାଶ—2. Destruction. ୩ । ଭଙ୍ଗ—3. Breaking. ୪ । କ୍ଳାନ୍ତି—4. Weariness. ବୈଦେ. ବିଣ—୧ । କ୍ଷତିଗ୍ରସ୍ତ—1.Damag-
क्षतिग्रस्त सिकस्त ed. ୨ । ଭଗ୍ନ—2. Broken. ୩ । ବିନଷ୍ଟ—3. Destroyed. ୪ । ଶୁଷ୍କ—4. Dried up; withered. ୫ । ଦୁରବସ୍ଥାପ୍ରାପ୍ତ—5. Reduced to bad or wretched condition. ୬ । କ୍ଳାନ୍ତ; ଶ୍ରାନ୍ତ—6. Pulled down; fatigued. ୭ । ବିମର୍ଷ—7. Sorrowful. ୮ । ଶୀର୍ଣ୍ଣଶୀର୍ଣ୍ଣ—8. Emaciated; lean.

ସିକ(କା)ସ୍ତ୍ପ (ପା)ଇଥ(ଅ)ସ୍ତ—ବୈଦେ.ବିଣ (ଭଉରଥ) (ଫା)—
Sika(kā)stpa(pā)iua(ā)st ଯେଉଁ ଭୂମି ଉପ
सिकस्तपाईवस्त् सिकस्तपेवस्त ବର୍ଷରେ ଧୋଇ ହୋଇଯାଏ
[ସିକ(କ)ସ୍ତ ପ(ପା)ଇସ୍ତ—ଅନ୍ୟରୂପ] ଅଥ୍ୟ ଯେଉଁ ଭୂମି ନଦୀ ଗର୍ଭରେ ଥିବାରୁ ନଷ୍ଟ ହୋଇଯାଏ—(Land)

Damaged by erosion by the flood of a river; diluvian. [ବ୍ୟ—ନଦୀର ଉଭୟ କୂଳରେ ଥିବା ଜମିର ଜମିଦାରମାନଙ୍କ ମଧ୍ୟରେ ଏକ ଅକୂଳର ଜମିକୁ ନଦୀଗର୍ଭ ଖାଇଯିବା ଓ ଅନ୍ୟ କୂଳରେ ଚଡ଼ା ପଡ଼ିଯିବା ଯୋଗୁ ଯେଉଁ ବିବାଦ ଘଟେ ତାହା ମୀମାଂସା କରିବାକୁ ଗଭର୍ଣ୍ଣମେଣ୍ଟ ରେଗୁଲେସନ ଅଛନ୍ତି କରିଅଛନ୍ତି।]

ସିକ(କା)ସ୍ତି—ବୈଦେ· ବି (ଫା)—୧। ଷତିଗ୍ରସ୍ତ ଅବସ୍ଥା—1. Sika(kā)sti Damaged condition. ୨। ଦୁର୍ଦ୍ଦଶା- ক্ষতি सकस्ती ଗ୍ରସ୍ତ ଅବସ୍ଥା—2. Wretched state. [ସିକ(କା)ସ୍ତିଆ—ଅନ୍ୟରୂପ] ବୈଦେ· ବିଣ ୧। ଷତିଗ୍ରସ୍ତ; ক্ষতিগ্রস্ত सिकस्त ବନଷ୍ଟ—1. Damaged; ruined. ୨। କ୍ଲାନ୍ତ—2. Pulled down; fatigued; wearied. ୩। ଦୁଃଖିତ—3. Sorrowful. ୪। ଦୁରବସ୍ଥା ପ୍ରାପ୍ତ—4. Reduced to wretched condition.

ସିକସ୍ତି ଜମି—ବୈଦେ. ବି—ନଦୀବଢ଼ି ଦ୍ୱାରା ଖାଇଯାଇଥିବା ବା ବାଲି Sikasti jami ମାଡ଼ିଯାଇ ନଷ୍ଟ ହୋଇ ଯାଇଥିବା ଜମି— সিকস্তিজমি सिकस्तीजमीन Land damaged by alluvion and diluvion.

ସିକା—ବୈଦେ. ବି—ସିକ୍କା (ଦେଖ)— Sikā (ସିକାଟଙ୍କା—ଅନ୍ୟରୂପ) Sikkā (See)

ସିକା(ଇତ୍ୟାଦି)—ଦେ· ବି—(ସଂ. ଶିକ୍ୟ ବା ଶିକ୍ୟ)—ଶିକା ଇତ୍ୟାଦି Sikā (etc) ଦେଖ)—Sikā etc (See)

ସିକାଏ(ୟ,ୟେ)ତ—ବୈଦେ. ବି (ଅ. ସିକାୟତ)—ଅଭିଯୋଗ— Sikāe(ya,ye)t 1. Complaint. ୨। ଦୋଷାରୋପ— শিকায়ত, शिकायत 2. Laying of a charge against a person. ୩। ନିନ୍ଦା—3. Blame. ୪। ଚୁଗୁଲି— 4. Backbiting.

ସିକାଏ(ୟ,ୟେ)ତି—ଦେ. ବିଣ—ସିକାଏତ୍ ସମ୍ବନ୍ଧୀୟ— Sikā(ya, ye)ti Relating to complaint. শিকায়তী शिकायती

ସିକାୟା—ଦେ· ବି (ସଂ. ଅଭୀଷ୍ଟବ)—ବହୁଳ କାଣ୍ଟାଯୁକ୍ତ ଏକ ଜଙ୍ଗଲି Sikāyā ଗଛ—Sapindus Mukorissi. [ବ୍ୟ— ছোটরিঠা कोची, सीकाकाइ, बनरिठा ଏହା ସୁନ୍ଦର ଓ ବହିଣ ଭାରତରେ ବଣରେ ଜନ୍ମେ। ଏଥିର ଛେଲ ଓ ଫଳ ଔଷଧରେ ଲାଗେ; ଦୁଇ ଚେପଟା ଓ ଲମ୍ବିଆ ଫଳ ପୁଟ- ଳାଇ; ତହିଁ ମଧ୍ୟରେ ଚେପଟା ମଞ୍ଜି ଥାଏ। ଏହି ଚୂର୍ଣ୍ଣକୁ ବାଟି ପାଣିରେ ମୁଣ୍ଡରେ ଲଗାଇ ବାଳ ଧୋଇ ବାଳକୁ ମଇଳା ସଫା କରନ୍ତି। ଏହାକୁ ଗଞ୍ଜାମରେ 'ବଣଫଳ' କହନ୍ତି।]

ସିକି—ଦେ· ଅ (ନିଶ୍ଚୟାର୍ଥକ)—ସିନା; କଦେ; ହଁ; ହୁଁ— Siki Certainly. [ବ୍ୟ—ସାଇଲୁ ସାର ସିକି ରଖା ଜଉ ହଁ ପାରେ, ପ୍ରାକୃତ ଲୋକଠାରେ ସମ୍ଭବ ନ ପାରେ। କୃଷ୍ଣସିଂହ- ହୀ ମହାଭାରତ, ଦ୍ରୋଣ।]

ସିକ(କ୍କି)ମ୍—ଦେ. ବି(ନାମ)—ନେପାଳ ଓ ଭୁଟାନର ମଧ୍ୟବର୍ତ୍ତୀ ସ୍ୱାଧୀନ Sik(kki)im ରାଜ୍ୟ ବିଶେଷ—Name of a feudatory সিকিম্ State between Nepal and Bhutan. सिक्किम

ସିକମ(ମି) (ଇତ୍ୟାଦି)—ବେଦେ. ବି ଓ ବିଣ—ସିକ୍‌ମୀ ଇତ୍ୟାଦି Sikim(mi) (etc) (ଦେଖ)—Sik-mī etc. (See)

ସିକୁନ୍—ପ୍ରାଦେ. (ଗଡ଼ଜାତ) ବି—ବାଉଁଶ ଖଡ଼ିକା; ବାଉଁଶ ଚିରି Sikun ହୋଇ ତିଆରି ହେଉଥିବା ସରୁ କାଠି—Long narrow sticks made out of bamboo lathis.

ସିକେ(ଖେ)ନ୍—ପ୍ରାଦେ· (ଗଡ଼ଜାତ) ବିଣ—୧। ମଣ ହେଉଥିବା(ଷଣ୍ଢ) Sike(khe)n 1. Under training. —୨। ଅନ୍ୟଠାରୁ ଶିକ୍ଷା ଦ୍ୱାରା ପ୍ରାପ୍ତ(ବୁଦ୍ଧି)—2. Got from the teaching of another.

ସିକେ(ଖେ)ନ୍ ବଛା—ପ୍ରାଦେ. (ଗଡ଼ଜାତ) ବି—ମଣ ହେଉଥିବା Sike(khe)n bachhā ବାଛୁରୀ—A young ox which is being trained to draw plough or cart. [ବ୍ୟ—ଜନ୍ମଠାରୁ ୩/୪ ମାସ ଯାଏ ବାଛୁରୀକୁ ଲଇ ବଛା, ଦୁଧ ପିଉଥିବା ଯାଏ—ପିଅବଛା, ଦୁଧ ଛାଡ଼ିବା ପରେ—ଛଡ଼ା ବଛା; ମଣ ହେଉଥିବା ସମୟରେ ସିକେନ୍ ବଛା, ମଣ ହେବାର ଏକ ବର୍ଷ ପରେ କାହିଁବଛା, ତତ୍ପରେ ବଳଦ କହନ୍ତି।]

ସିକେନ୍ ବୁଇଦ୍(ବୁଧି)—ପ୍ରାଦେ. (ଗଡ଼ଜାତ) ବି—ଅନ୍ୟଠାରୁ ଶିକ୍ଷା Siken buid(budhi) ପାଇଥିବା ବୁଦ୍ଧି; ଶିଖେଇ ଦେଲ ବୁଦ୍ଧି —Intelligence due to the tutoring of another person.

ସିକେନ୍ ବୁଧିଆ—ପ୍ରାଦେ· (ଗଡ଼ଜାତ) ବିଶ—ଯେଉଁ ବ୍ୟକ୍ତି ଅନ୍ୟର Siken budhiā କଥାରେ ଚାଲେ—A person who acts according to the tutoring of another.

ସିକ୍କ—ବୈଦେ· ବି—ସିକ୍ (ଦେଖ) Sikka Sik (See)

ସିକ୍କା—ବୈଦେ. ବି (ଅ. ସିକ୍କା—ମୁଦ୍ରା; ମୋହର; ଛାପ)— Sikkā ମୋଗଲ ବାଦଶାହାଙ୍କ ଅମଳରେ ଭାରତରେ ଚଳୁଥିବା (ସିକ୍କା ଟଙ୍କା—ଅନ୍ୟରୂପ) ରୌପ୍ୟ ମୁଦ୍ରା; ସେହି ଟଙ୍କା (ଏହା সিক্কা, সিকা টাকা ଆକାରରେ ଅଧୁନିକ ଟଙ୍କାଠାରୁ ଛୋଟ, କିନ୍ତୁ सिक्का ଓଜନରେ ବେଶୀ ଏବଂ ଏଥିରେ ଅଧୁନିକ ଟଙ୍କା ଅପେକ୍ଷା ଖାଦ କମ ଥିଲା)—Silver coin current in India during the Moghul reign. [ବ୍ୟ—୧୮୦୦ ମସିହାରେ ବ୍ରିଟିଶ ରାଜତ୍ୱ ଆରମ୍ଭ ହେବାରୁ ସିକ୍କା ଏକ ଟଙ୍କାର ମୂଲ୍ୟ ୪ କାହାଣ କଉଡ଼ି ସ୍ଥିର ହେଲା। ସୁଧାସାଗର. ପ୍ରାଚୀନ. ଉକ୍ତିକ—୧୦୦ ସିକ୍କା. ଟଙ୍କା—ଅଧୁନିକ ଟ ୧୦୬।୶/୬ ପାଇ।]

ସିକ୍ତ—ସଂ. ବିଣ (ସିଚ୍ ଧାତୁ=ଛିଞ୍ଚିବା+କର୍ମ. ତ)—୧ । ପାଣି ଛିଞ୍ଚା
Sikta ଯାଇଥିବା—1. Sprinkled with water.
୨ । ଆର୍ଦ୍ରୀକୃତ—2. Moistened.

ସିକ୍ଥ—ସଂ. ବି ( ସିଚ୍ ଧାତୁ+କର୍ତ୍ତୃ. ଥ )—୧ । ମଧୂଚ୍ଛିଷ୍ଟ; ମହଣ
Siktha (ମେଦିନୀ)—1. Bees wax. ୨। ନୀଳୀ (ହେମଚନ୍ଦ୍ର)-
2. The Indigo plant. ୩ । ଭୁକ୍ତପୁଲାକ; ଗ୍ରାସ;
ଅନ୍ନର ଏକ ଗ୍ରାସ (ମେଦିନୀ)—3. One mouthful
of food.

ସିକ୍ଥକ—ସଂ. ବି (ସିକ୍ଥ+ସ୍ୱାର୍ଥେ. କ)—ମଧୂଚ୍ଛିଷ୍ଟ; ମହଣ—
Sikthaka Bees wax.

ସିକ୍ମୀ (ଇତ୍ୟାଦି)—ବୈଦେ. ବି ଓ ବିଣ—ସିକ୍‌ମୀ ଇତ୍ୟାଦି (ଦେଖ)
Sikmī (etc) Sik-mī etc. ( See )

ସିକ୍ୟ(କ୍ୟା)—ସଂ. ବି (ସିକ୍ ଧାତୁ=ଗମନ କରିବା+କର୍ତ୍ତୃ. ଯ;
Sikya(kyā) +ଅ)—ଶିକା ( ଦେଖ )—Śikā
( See )

ସିକ୍ୟିତ—ସଂ. ବିଣ (ସିକ୍ୟ+ଇତ)—ଶିକାରେ ରଖା ଯାଇଥିବା (ବସ୍ତୁ)
Sikyita —(anything) Kept in a 'Sikā.'

ସିକ୍ଷ୍ୟ—ସଂ. ବି—ସ୍ଫଟିକ (ଶବ୍ଦ କଳ୍ପଦ୍ରୁମ)—
Sikshya Quartz.

ସିଖ୍ (ଇତ୍ୟାଦି)—ଦେ. ବି—ଶିଖ୍ ଇତ୍ୟାଦି ( ଦେଖ )—
Sikh (etc) Śikh etc. ( See )

ସିଖର(ରି)ଣୀ—ଦେ. ବି (ସଂ. ଶିଖରିଣୀ)—ଶିଖରିଣୀ ୩ (ଦେଖ)—
Sikhara(ri)ṇī Śikhariṇī ( See )

ସିଖା—ଦେ. ବି ( ସଂ. ଶିକ୍ଷା; ପ୍ରା. ସିକ୍‌ଖା )—୧ । ଶିକ୍ଷା—
Sikhā 1. Learning. ୨ । ଟିଅ(ଟା)ଇବା; ଉତ୍ତେଜିତ
শেখা सिखा କରିବା—2. Instigating. ୩ । ଅଧ୍ୟାପନା—
3. Teaching; tutoring. ଦେ. ବିଣ—୧। ଶିକ୍ଷା
উত্তেজিত ପ୍ରାପ୍ତ—1. Taught; tutored. ୨ । ଉତ୍ତେଜିତ—
सिखित 2. Instigated. ୩ । ଯେ ଅନ୍ୟଠାରୁ ଶିକ୍ଷା କରେ
—3. Learning from another. [ଉ—ଦେଖା
ସିଖା ଓଡ଼ଣା—ଢଙ୍ଗ ।]

ସିଖ୍ରି—ପ୍ରାଦେ. (ଲଉଥ) ବି ଓ ବିଣ—ଅଇଁଠା—
Sikhri Leaving of another's food.

ସିଗ୍—ପ୍ରାଦେ. (ଲଉଥ) ବି—କୌଣସି ପଦାର୍ଥର ଅଗ୍ରଭାଗ—
Sig The top part of anything.

ସିଗ୍(ଗା)ରେଟ୍—ବୈଦେ. ବି ( ଇଂ. ସିଗାରେଟ୍ )—ଏକ ଜାତୀୟ
Sig-(gā)reṭ ଛୋଟ ପିକା—Cigarette.
(ସିଗ୍ରେଟ୍—ଅନ୍ୟରୂପ) সিগারেট্ सिगरेट

ସିଗଲ୍—ବୈଦେ. ବି (ଇଂ. ସିଗଲ୍)—ସମୁଦ୍ର ଉପରେ ଭାସିବା ଓ
Sigal ଉଡ଼ିବା ଏକ ପ୍ରକାର ଛୋଟ ଚଢ଼େଇ—Sea-gull.
সিগল্ सिगल

ସିଗା—ପ୍ରାଦେ. (ବଲାଙ୍ଗିର ପାଟଣା) ବିଣ—ବଡ଼—
Sigā Large.

ସିଗାର୍—ବୈଦେ, ବିଣ (ଇଂ. ସିଗାର୍)—ପିକା—
Sigār সিগার सिगार Cigar.

ସିଗାର୍ ଟ୍ରେ—ବୈଦେ, ବି (ଇଂ)—ପିକା ରଖିବା ଥାଳିଆ—
Sigār ṭre Cigar-tray.
সিগারট্রে सिगार ट्रे

ସିଗିର୍ ବିଗିର୍—ପ୍ରାଦେ (ସମ୍ବଲପୁର) ବିଣ—ସାଲୁ ସାଲୁ (ଦେଖ)
Sigir bigir Sālu sālu. (See)

ସିଗ୍ନାଲ୍—ବୈଦେ. ବି ( ଇଂ. ସିଗ୍‌ନାଲ୍ )—ଷ୍ଟେସନକୁ ରେଲଗାଡ଼ି
Signāl ଆସିବା ପୂର୍ବରୁ ଉକ୍ତ ଗାଡ଼ିର ଆଗମନସୂଚକ ପୂର୍ବ-
সিগনাল सिगनल ସଙ୍କେତ—Signal given of an
incoming train.

ସିଗ୍ନାଲର୍—ବୈଦେ. ବି (ଇଂ. ସିଗ୍‌ନାଲର୍ )—୧ । ସଙ୍କେତଦାତା;
Signālar ଯେ ସଙ୍କେତ ଦିଏ—1. Signaller. ୨ । ରେଲ
সিগ্নালর ଗାଡ଼ିର ସିଗନାଲ୍ ଦେଖାଇବା ଭାର ଯେଉଁ କର୍ମଚାରୀ
सिगनलर ବା ଭୃତ୍ୟ ଉପରେ ଥାଏ—2. Signal man.
(ସିଗ୍ନଲ୍ ମାନ୍—ଅନ୍ୟରୂପ) ୩ । ଟେଲିଗ୍ରାଫ କଳ ଚଳାଇବା
କର୍ମଚାରୀ—3. The operator of a Telegraph
Office.

ସିଗ୍ରି—ପ୍ରାଦେ (ଲଉଥ) ବି—ପିଠା ବିଶେଷ—
Sigri A kind of cake.

ସିଙ୍କ୍ରା—ପ୍ରାଦେ (ବସ୍ତର) ବି—ଶିକୁଳି—
Sink-rā A chain.

ସିଙ୍କୋନା—ବୈଦେ. ବି ( ଇଂ. ସିନ୍‌କୋନା )—ଅଙ୍କୋଲ ବର୍ଗର
Sinkonā ଆମେରିକାଦେଶୀୟ ଗଛ—Cinchona. [ ଉ—
সিঙ্কোনা ବର୍ତ୍ତମାନ ବଙ୍ଗର ଦାର୍ଜିଲିଙ୍ଗ୍ ଓ ମାନ୍ଦ୍ରାଜର ନୀଲଗିରି
सिनकोना ପାହାଡ଼ରେ ଗଭର୍ଣ୍ଣମେଣ୍ଟଙ୍କ ଦ୍ୱାରା ଏହାର ଚାଷ
ହେଉଅଛି । ଏହି ଗଛର ଛେଲି ପାଣିରେ ଭିଜାଇଲେ
ସେଥିରୁ ଏକପ୍ରକାର ମଣ୍ଡ ବାହାରେ । ସେ ମଣ୍ଡକୁ
ଶୁଖାଇଲେ ତାହା ଅପାଣ୍ଡୁର ଚୂର୍ଣ୍ଣରେ ପରିଣତ ହୁଏ ।
ତାହାକୁ 'ସିଙ୍କୋନା' ବା କୁଇନାଇନ୍ କୁହାଯାଏ ।
ଏହା ଜ୍ୱରଘ୍ନ ଔଷଧ; କିନ୍ତୁ ଏହା ଖାଇଲେ ବାନ୍ତି
ଦେଖାଏ; ବେଶୀ ମାତ୍ରାରେ ଏହା ସେବନ କଲେ
ଦୁର୍ବଳତା ବଢ଼େ ଓ କାନରେ ଝାଁଇଁ ଝାଇଁ ଶବ୍ଦ ଓ
(ସିନ୍‌କୋନା—ଅନ୍ୟରୂପ) ମୁଣ୍ଡବୁଲା ଅନୁଭୂତ ହୁଏ । ]

ସିଙ୍କୋଲା—ପ୍ରାଦେ (ଗଡ଼ଜାତ) ବି—ଶିକୁଳା ଘାସ (ଦେଖ)
Sinkolā Śikuḷā ghāsa. (See)

ସିଙ୍ଗ୍(ଙ୍ଘ୍,ହ୍)ରା—ପ୍ରାଦେ (ସମ୍ବଲପୁର) ବି—ଶିଂଘ୍ରା (ଦେଖ)
Sing(ngh,h)-rā Sing-rā. (See)

ସିଙ୍ଗ୍‌ସିଙ୍ଗିଆ—ପ୍ରାଦେ (ପାଳଲହଡ଼ା) ବି—ଚିଡ଼ିଚିଡ଼ା; ଖଙ୍ଖଙ୍ଗା—
Sing-singia Surly; peevish.
(ଉ—ସେ ଜଣେ ଭାରି ସିଙ୍ଗ୍‌ସିଙ୍ଗିଆ ଲୋକ ।)

ସିଙ୍ଗ(ଙ୍ଘ) (ଇତ୍ୟାଦି)—ଗ୍ରା. ବି (ସଂ.ସିଂହ)—ସିଂହ (ଘ)ଇତ୍ୟାଦି(ଦେଖ)
Singa(ngha) (etc) Singa(gha) etc. (See)

ସିଙ୍ଗ(ଙ୍ଗି,ଙ୍ଗେ,ଙ୍ଘ,ଙ୍ଘି,ଙ୍ଘେ)ଡ଼ା (ଇତ୍ୟାଦ)—ଦେ. ବ—୧ । ଶିଂଗଡ଼ା
Singa(ṅgi,ṅge,ṅgha,ṅghi,ṅghe)rdā (etc) ଇତ୍ୟାଦ (ଦେଖ)—1. Simgardā etc. ( See ). ୨ । ତାଳଚେରର ନଦୀ ବିଶେଷ—2. Name of a river in the Talcher State of Orissa. ( ଉ—ସିଙ୍ଗଡ଼ା ଭଟିଗା ଯୌତ ଅଙ୍ଗାର ଘାଉରେ । ରାଧାନାଥ, ମହାଯାତ୍ରା ।)

ସିଙ୍ଗ(ଙ୍ଗି)ଲ୍—ବୈଦେ. ବ ଓ ବଣ—ଶିଂଗଲ୍ (ଦେଖ)
Singa(ṅgi)l Simgal. (See)

ସିଙ୍ଗା(ଙ୍ଘା)ଣି (ଇତ୍ୟାଦ)—ଦେ· ବ—ଶିଂଗାଣି ଇତ୍ୟାଦ (ଦେଖ)
Singā(ṅghā)ṇi (etc) Simgāṇi etc. (See)

ସିଙ୍ଗା(ଙ୍ଘା)ଣିଆ—ଦେ· ବଣ, ପୁଂ—ଶିଂଗାଣିଆ (ଦେଖ)
Singā(ṅghā)ṇiā Simgāṇiā. (See)
(ସିଙ୍ଗା[ଙ୍ଘା]ଣେଇ—ସ୍ତ୍ରୀ)

ସିଙ୍ଗା(ଙ୍ଘା)ପୁର—ଦେ· ବ (ନାମ)—୧ । ମାଲୟ ଉପଦ୍ୱୀପର ଦକ୍ଷିଣ ଭାଗରେ ଥିବା ବନ୍ଦର—1. Singapore.
Singā(ṅghā)pura
ସିଂଙ୍ଗାପୁର
सिंगापुर
[ ଦ୍ର—ଏହା ମାଲୟ ଉପଦ୍ୱୀପର ଦକ୍ଷିଣରେ ଅବସ୍ଥିତ ଗୋଟିଏ ଦ୍ୱୀପ । ୧୮୧୯ ସାଲରେ ସର୍ ଷ୍ଟାମ୍ଫୋର୍ଡ଼ ରାଫଲ୍ସ ଏହାକୁ ବ୍ରିଟିଶ୍ ସାମ୍ରାଜ୍ୟଭୁକ୍ତ କରିଥିଲେ । ୧୯୪୧ ସାଲରେ ଏଠାରେ ଦୁର୍ଗ ନିର୍ମାଣ କରିବାର ସ୍ଥିର ହେଲା । ସେତେବେଳେ ଏହା ଗୋଟିଏ ଜଙ୍ଗଲମୟ ସନ୍ଧ୍ୟାପ୍ରୟ ସ୍ଥାନ ଥିଲା; କେବଳ ଏଠାରେ ଗୋଟିଏ ପୁରାତନ କାଳର ଘୋଡାଶାଳ ଥିଲା । ବ୍ରିଟିଶ୍ ଇଞ୍ଜିନିଅରମାନଙ୍କର ଶ୍ରମରେ ବର୍ତ୍ତମାନ ଏହାକୁ ଶୁଷ୍କଭୂମି, ଘୋଡାଶାଳ, ରାସ୍ତା ଏବଂ ରେଳରାସ୍ତାରେ ପରିଣତ କରାଅଛି । ବର୍ତ୍ତମାନ ଏହା ପୃଥିବୀରେ ସର୍ବାପେକ୍ଷା ଦୁର୍ଭେଦ୍ୟ ଦୁର୍ଗସମ୍ପନ୍ନ ଦ୍ୱୀପ । ଏହା ବ୍ରିଟିଶ୍ ଜାତିର ପ୍ରଶାନ୍ତ ମହାସାଗରରେ ସର୍ବପ୍ରଧାନ ନୌବାହିନୀ କେନ୍ଦ୍ର [Naval Base]. ଏହି ନୌକେନ୍ଦ୍ର ନିର୍ମାଣରେ ୧୦୦ ଲକ୍ଷ ପାଉଣ୍ଡ ବା ପାଖେ ୧୩ କୋଟି ଟଙ୍କା ଖର୍ଚ୍ଚ ହୋଇଅଛି । ଏଥିର ସଂପୃକ୍ତ କୋଟାବାହମାନଙ୍କ ଖର୍ଚ୍ଚ ହିସାବ କଲେ ମୋଟ ଖର୍ଚ୍ଚ ଦୁଇକୋଟି ପାଉଣ୍ଡ ବା ୩୦ କୋଟି ଟଙ୍କାରୁ ଅଧିକ ହେବ । ଏଠାରେ ବହୁସଂଖ୍ୟକ ଯୁଦ୍ଧଜାହାଜ ଏବଂ ଉଡ଼ାଜାହାଜ ରହିଅଛି । ଅଷ୍ଟ୍ରେଲିଆ, ନ୍ୟୁଜିଲଣ୍ଡ, ହଂକଂ ପ୍ରଭୃତି ଦେଶମାନଙ୍କ ଏବଂ ଭାରତବର୍ଷରେ ବ୍ରିଟିଶ୍ ଜାତିର ବିପୁଳ ବାଣିଜ୍ୟକୁ ରକ୍ଷା କରିବା ଏହି ନୌକେନ୍ଦ୍ରର ପ୍ରଧାନ ଉଦ୍ଦେଶ୍ୟ ।

ସନ୍ଦର୍ଭଲେଖକ—ଶ୍ରୀ ଜଗନ୍ନାଥ ତ୍ରିପାଠି, ବି. ଏ, ବି. ଟି ।]

୨ । କଟକ ଜିଲ୍ଲାର ମଧୁପୁର କଣ୍ଠାଅନ୍ତର୍ଗତ ଗ୍ରାମବିଶେଷ—2. Name of a village in Cuttack district. [ଦ୍ର—ଏଠାରେ ଘଣ୍ଟାଂଶାନ୍ତ ସମୟରେ ଏକମାସବ୍ୟାପୀ ଏକ ପ୍ରକାଣ୍ଡ ମେଳା ହୁଏ । ଓଡ଼ିଶା ବାହାର ଅଞ୍ଚଳମାନଙ୍କରୁ ଅନେକ ବେପାରୀ ଆସି ଏଠାରେ ମାଲବ ପସରାକୁ ରଖନ୍ତି । ନାନା ଦୂର ସ୍ଥାନରୁ ସହସ୍ରାଧିକ ନରନାରୀ ଏହି ମେଳା ଦେଖିବା ପାଇଁ ଉଣ୍ଡ ହୁଅନ୍ତି ।]

ସିଙ୍ଗାର୍ ବାର୍ଡ଼ି—ପ୍ରାଦେ (ବାଲେଶ୍ୱର)—ଦୁଇ ଖଣ୍ଡ କଡ଼ି କାଠ ଉପରେ ରହିଥିବା ଛୋଟ ଛୋଟ କାଠଖଣ୍ଡ (ଯାହା ଉପରେ ପଟ୍କା ଛାତର ଝାଇଲ୍ ବସାଯାଏ); ବରଗା—Pieces of rafter put over two timbers of a roof.
Singār bārḍi

ସିଙ୍ଗାର (ଇତ୍ୟାଦ)—ଦେ. ବ—୧ । ଶିଂଙ୍ଗାର ଇତ୍ୟାଦ (ଦେଖ)—
Singāra (etc) 1. Simṅgāra etc. (See) ୨ । ଭୂଷଣ—
সিংগার 2. Ornament. [ଉ—କ ବନ୍ଧି ତାହା ରୂପଶୋଭା, सिंगार ଅବା କଶାଦ ଯାଉ ସିଙ୍ଗାର । ରାଧାନାଥ· ଯଯାତି ।]

ସିଙ୍ଗା(ଙ୍ଘା)ରିବା—ଦେ କି—ସିଂଘାରିବା (ଦେଖ)
Singā (ṅghā) ribā Simghāribā. (See)

ସିଙ୍ଗା(ଙ୍ଘା)ରି ହେବା—ଦେ. କି—ସିଂଘାରି ହେବା (ଦେଖ)
Singā (ṅghā) ri hebā Simghāri hebā. (See)

ସିଙ୍ଗୁରୁ—ପ୍ରାଦେ (ଗଡ଼ଜାତ) ବ—ଶାଗୁଆନ୍ (ଦେଖ)
Singuru Sāguān. (See)

ସିଙ୍ଘଣ—ସଂ. ବ ( ଦ୍ରୁନସ୍. ଧାତୁ+କର୍ତ୍ତ୍ରି. ଅନ; ନିପାତନ)—ସିଂଘାଣ
Singhaṇa (ଶବ୍ଦରତ୍ନାବଳୀ)(ଦେଖ)—Singhāṇa. (See)

ସିଙ୍ଘଣକ—ସଂ.ବ (ସିଂଘଣ+ଅକ)—ସିଂଘାଣ [ଦେଖ](ଶବ୍ଦରତ୍ନାବଳୀ)
Singhaṇaka Singhāṇa [See].

ସିଙ୍ଘଳ—ଗ୍ରା· ବ—ସିଂହଳ [ଦେଖ]—
Singhala Simhaḷa [See].

ସିଙ୍ଘଳୀ—ଗ୍ରା. ବ.—ସିଂହଳୀ [ଦେଖ]
Singhali Simhaḷī [See].

ସିଙ୍ଘା—ଦେ. ବ—୧ । ସିଂଗା ( ଦେଖ )—1. Singā (See).
Singhā ୨ । ଚିଲିକାରେ ଚଳୁଥିବା ଡଙ୍ଗାର ପାଲକୁ ବା ଚଲେଇକୁ ଅଗ ମଙ୍ଗରେ ଟାଣିବା ପାଇଁ ବ୍ୟବହୃତ ଦଉଡ଼ି ( ନିଅଁଠାରୁ ଛୋଟ )—2. The string which fastens the sail or bamboo matting to the prow of a country boat in the Chilka lake.

ସିଙ୍ଘାଣ—ସଂ.ବ (ଦ୍ରୁନସ୍ ଧାତୁ=ନାଶକରିବା+କର୍ତ୍ତ୍ରି ଅନ;ବର୍ଣ୍ଣବିପର୍ଯ୍ୟୟ; ନିପାତନ )—ସିଂହାଣ ( ଦେଖ )—
Singhāṇa Simhāṇa [See].

ସିଙ୍ଘାରୀ—ଦେ. ବ—ରାଜା ବା ଦେବତାଙ୍କ ବେଶକାରୀ—
Singhāri Dresser; dresser of an idol or a King.
সিঙ্গারী सिंगारी

ସିଙ୍ଘିନୀ—ସଂ. ବ—ନାସିକା (ଜ୍ୟୋତିଷ)—
Singhini The nose.

ସିଙ୍ଘୁଣୀ—ଗ୍ରା. ବ. ସ୍ତ୍ରୀ—ସିଂହୀ (ଦେଖ)—
Singhuṇī Simhī [See].
( ସିଙ୍ଘ—ପୁଂ )

ସିଚ୍ ( ଧାତୁ )—ସଂ.—୧ । ସେଚନ କରିବା; ଛିଞ୍ଚିବା—
Sich [root] 1. To sprinkle. ୨ । ସିକ୍ତ କରିବା;

ଓଦା କରିବା—2. To moisten. ୩ । ସେକିବା; ଉତ୍ତାପ ପ୍ରୟୋଗ କରିବା—3. To foment; to apply heat.

**ସିଚୟ**—ସଂ. ବି (ସଚ୍ ଧାତୁ=ଜଳାଦି ସେଚନ କରିବା+କର୍ମ.ଅୟ୍)—
Sichaya ୧ । ବସ୍ତ୍ର ( ହେମଚନ୍ଦ୍ର )—1. Cloth. ୨ । ଜୀର୍ଣ୍ଣ ବସ୍ତ୍ର (ବିକାଣ୍ଡ ଶେଷ)—2. Torn cloth; rag.

**ସିଜର୍**—ଦେ. ବି (ନାମ) (ଇଂ. ସିଜାର୍)—ପ୍ରାଚୀନ ରୋମ୍ ସାମ୍ରାଜ୍ୟର
Sijar सीजर् लिरज ଜନୈକ ରାଜା—Caesar. [ଦ୍ର—ଏହାଙ୍କର ପୂର୍ଣ୍ଣ ନାମ ଜୁଲିଅସ୍ ସିଜର୍ (Julius Caesar) । ଜନ୍ମ ଖ୍ରୀ: ପୂ: ୧୦୦ ଅବ୍ଦ । ବାଗ୍ମୀପ୍ରବର ସିସିରୋଙ୍କର ଏ ସମସାମୟିକ ଥିଲେ । ଏ ପ୍ରତିଭାବଳରେ ରୋମ୍ ସାମ୍ରାଜ୍ୟର ପ୍ରଧାନ ବ୍ୟକ୍ତି ବୋଲି ପରିଗଣିତ ହୋଇ ଥିଲେ ଏବଂ ସିସିରୋଙ୍କ ଛଡ଼ା ଏହାଙ୍କ ପରି ରୋମ୍‌ରେ ଅନ୍ୟ କେହି ବାଗ୍ମୀ ନ ଥିଲେ । ଏ ପ୍ରଥମେ ରୋମ୍ ରାଜ୍ୟରେ ଜଣେ ଶାସନକର୍ତ୍ତା (consul) ହୋଇ ପରେ ଇଉରୋପର ପଶ୍ଚିମବର୍ତ୍ତୀ ଦେଶକୁ ଓ ଇଂଲଣ୍ଡକୁ ଆକ୍ରମଣ କରି ସେ ଦେଶମାନଙ୍କୁ ରୋମ୍ ସାମ୍ରାଜ୍ୟଭୁକ୍ତ କଲେ । ଏ ଅଫ୍ରିକାକୁ ଯାଇ ସେଠାର ରାଜକୁମାରୀ କ୍ଲିଓପାଟ୍ରାଙ୍କଠାରେ ପ୍ରାଣ ସମର୍ପଣ କଲେ । ଏହା ପୂର୍ବରୁ ସେ କ୍ରମଶଃ ୩ ଗୋଟି ସ୍ତ୍ରୀଙ୍କର ପାଣି ଗ୍ରହଣ କରି ସାରିଥିଲେ । ତାଙ୍କ ଔରସରେ କ୍ଲିଓପାଟ୍ରାଙ୍କର ଗୋଟିଏ ପୁତ୍ର ଲାଭ ହେଲା । ତାହା ପରେ ଏ ମିଶରର ରାଜା ଟଲେମୀଙ୍କୁ ପରାସ୍ତ କରି କ୍ଲିଓପାଟ୍ରାଙ୍କୁ ମିଶରର ରାଜ ସିଂହାସନରେ ବସାଇ ଦେଶକୁ ଫେରିଲେ । ଏ ଆପଣାକୁ ସାଧାରଣତନ୍ତ୍ର ରୋମ୍ ସାମ୍ରାଜ୍ୟର ସମ୍ରାଟ୍ ବୋଲି ଜ୍ଞାନ କରୁଅଛନ୍ତି, ଏହା ସନ୍ଦେହ କରି କେତେଗୁଡ଼ିଏ ଦେଶପ୍ରାଣ ବ୍ୟକ୍ତି ଚକ୍ରାନ୍ତ କରି ଏହାଙ୍କୁ ଖ୍ରୀ: ପୂ: ୪୪ ଅବ୍ଦରେ ଗୁପ୍ତ ଭାବରେ ହତ୍ୟା କଲେ ।

ଏ ଖ୍ରୀ: ପୂ: ୫୫ ଅବ୍ଦରେ ଇଂଲଣ୍ଡକୁ ଆକ୍ରମଣ କରି ତାହାକୁ ରୋମ୍ ସାମ୍ରାଜ୍ୟଭୁକ୍ତ କରିଥିଲେ । ଏ ପଞ୍ଜିକାର ସଂସ୍କାର କରିଥିଲେ ଓ ଲାଟିନ୍ ବ୍ୟାକରଣରେ ଅପାଦାନ କାରକ (Oblative case)ର ନୂତନ ପ୍ରଚଳନ କରିଥିଲେ ।]

**ସିଜା**—ଦେ. ବି ଓ ବିଣ—ସିଝା ( ଦେଖ )
Sijā Sijhā ( See )

**ସିଜା(ଜେ)ଇବା**—ଦେ. କ୍ରି—ସିଝାଇବା ( ଦେଖ )
Sijā(je)ibā Sijhāibā ( See )

**ସିଜିବା**—ଦେ. କ୍ରି—ସିଝିବା ( ଦେଖ )
Sijibā Sijhibā ( See )

**ସିଜୁ**—ଦେ. ବି—ସିଝୁ ( ଦେଖ )—Sijhu ( See ) [ଢ଼—ସିଜୁ
Siju ଅନୁ ବାଡ଼େ, ଦଣ୍ଡା ସିଡ଼ା ଭାଲେ, ଫୁଟେ ଭୋଗ କର୍ମେ ଫୁଲେ । ବଉଦକଣୋର ଶର୍ମିଷ୍ଠା ।]

**ସିଝା**—ଦେ. ବି (ସଂ. ସିଦ୍ଧ; ପ୍ରା. ସିଜ୍ଝ)—ସିଦ୍ଧ କରିବା—
Sijhā Boiling.
सीझा, सीझा सीमा ଦେ. ବିଣ—ସିଦ୍ଧ—Boiled.

**ସିଝା(ଝେ)ଇବା**—ଦେ. କ୍ରି—ଅଗ୍ନି ଉତ୍ତାପରେ ସିଦ୍ଧ କରିବା—
Sijhā(jhe)ibā To boil a thing over fire.
सीझाना, सीझाना सीमाना

**ସିଝା ଘା**—ଦେ. ବି—ଗରମ ପାଣି ବା ଗରମ ତେଲ ଆଦି ପଡ଼ି
Sijhā ghā ଦେହରେ ହୋଇଥିବା ଫୋଟକା ଓ କ୍ଷତ—
सिझा घा सीमा घा Scald.
(ସିଝା ଘାଅ—ଅନ୍ୟରୂପ)

**ସିଝା ମଣ୍ଡା**—ପ୍ରାଦେ. (ସଂକ୍ଷୁପ) ବି—ଅଧାରରେ ସିଦ୍ଧ ମଣ୍ଡା ପିଠା-
Sijhā maṇḍā Cake boiled in water vapour.

**ସିଝିବା**—ଦେ. କ୍ରି (ସଂ. ସିଦ୍ଧ; ସଂ. ସିଧ୍ ଧାତୁ)—ଆତପ ବା ଅଗ୍ନିରେ
Sijhibā ସିଦ୍ଧ ହେବା—To be boiled over fire or
सीझा, सिझा सिझना in sun's rays.

**ସିଝୁ**—ଦେ. ବି (ସଂ. ସୀହୁଣ୍ଡ; ସେହୁଣ୍ଡ; ସ୍ନୁହୀ)—ପତର ସିଝୁ; ମନସା
Sijhu ସିଝୁ; ଦଣ୍ଡା ସିଝୁ—Euphorbia Nivulia;
सीज, सीझ, मनसा सीझ Euphorbia Hirta (Haines).
सिज, थुही, थुहर
ଅ. ଉକ୍ତମ୍
ସଂସ୍କୃତ ପର୍ଯ୍ୟାୟ—
ସିଂହତୁଣ୍ଡ, ଦଣ୍ଡ ବୃକ୍ଷକ, କାଣ୍ଡୀ, ବଜ୍ରଦ୍ରୁ, ବଜ୍ରକଣ୍ଟକ, ବଜ୍ରଦ୍ରୁମ, କେଦାର, କୃଷ୍ଣସାର, ସୁଧା, ନାଗଦ୍ରୁ, କାଣ୍ଡଶାଖ, ସୀହୁଣ୍ଡ, ସମନ୍ତ ଦୁଗ୍ଧା, କାଣ୍ଡ ରୋହକ, ଶୀହୁଣ୍ଡ, ସେହୁଣ୍ଡ, ସ୍ନୁକ୍, ମହାବୃକ୍ଷ, ସ୍ନୁହା, ସ୍ନୁହି, ସ୍ନୁଘ୍ନୀ, ଗୁଡ଼ା, ଗୁଡ଼, ସ୍ନୁଷା, ଗୁଡ଼ୀ ।
[ଦ୍ର—ଏହା ଏକ ପ୍ରକାର କ୍ଷୀର ଗଛ । ଏହାର ପତର ଅନେକ କୁଡ଼ର-କରି ପଡ଼ି ଓ କଣ୍ଟା । ଏ ଗଛର ଡାଳରେ ଓ ପତ୍ର ମୂଳରେ ଯୋଡ଼ା ଯୋଡ଼ା କଣ୍ଟା ଥାଏ । ଏ ଗଛ ଆମ ଦେଶରେ ଜଙ୍ଗଲରେ ଢ଼ିଏ ଓ ଜଣା ଥିବାରୁ ଲୋକେ ଏହାଦ୍ୱାରା ବାଡ଼ ଦିଅନ୍ତି । ଏହାର ପତ୍ର ଓ ଡାଳ ଭାଙ୍ଗି ଦେଲେ ଚୂନ ପାଣି ପରି ଧଳା ବହଳିଆ କ୍ଷୀର ବାହାରେ । ଏହାର ପତରକୁ ଲୋକମାନେ ଖାଆନ୍ତି । ଏହାଙ୍କ କ୍ଷୀର ଅଠାଳିଆ, ଗନ୍ଧ ଝାଞ୍ଜିଆ ଓ ବଳଲ ମୋଟ ।

ବୈଦ୍ୟଶାସ୍ତ୍ର ଅନୁସାରେ ଏହା ତୀକ୍ଷ୍ଣ ବିରେଚକ, ଅଗ୍ନି, ପାଚକ, କଟୁରସ ଓ ଗୁରୁ । ଏହା ଶୂଳ, ଆମ, ଅଷ୍ଠୀଳିକା, ଉଦରାଧ୍ମାନ, କଫ, ଗୁଳ୍ମ, ଜଠର, ବାୟୁ, ଉନ୍ମାଦ, ମୋହ, କୁଷ୍ଠ, ଅର୍ଶ, ଶୋଥ, ମେଦ, ଅଶ୍ମରୀ, ପାଣ୍ଡୁ, ବ୍ରଣ, ଜ୍ୱର ପ୍ଳୀହା ଓ ବିଷ ନାଶକ ।

ଏହାର ଅଠା ଗୁଳ୍ମ, କୁଷ୍ଠ, ପାଣ୍ଡୁ ଆଦି ରୋଗରେ ପ୍ରୟୋଗ କରାଯାଏ ଏବଂ ଏହା ବିରେଚକ ।

ଦେବ ଶୟନ ପରେ କୃଷ୍ଣ ପକ୍ଷ ପଞ୍ଚମୀରେ ଗୃହର ଅଗଣାରେ ସିଝୁ ଗଛରେ ପୁଷ୍ପ ନାଗଙ୍କୁ ପୂଜା କରିବାର ବିଧି ଅଛି । (ଦେଖ ପୁରାଣ. ଇତ୍ୟାଦି ଗ୍ରନ୍ଥ)

ଉତ୍କଳରେ ସିଝୁ ଗଛ ଅଛି । ତାହାର ଏକ ସିଝୁ ପତରଠାରୁ ଲୋଟ ଓ ବଳଲା । ଉତ୍କଳରେ ଲୋକମାନଙ୍କୁ କିଛୁ ଦେଖାଯାଏ ।]

ସିଝୁ ଶୋଲ—ଦେ. ବ—ଶିଝୁ ଶୋଲ ( ଦେଖ )
Sijhu sola — Sijhu sola ( See )

ସିଞ୍ଚଡ଼ା—ଦେ. ବ ଓ ବଣ ( ସ. ସଞ୍ଚାଳନ )—ଛିଞ୍ଚଡ଼ା ( ଦେଖ )
Sinchardā — Chinchardā ( See )

ସିଞ୍ଚଡ଼ା(ଡ଼େ)ଇବା—ଦେ. କ୍ରି.—ସିଞ୍ଚାଡ଼ିବାର ଣିଜନ୍ତରୂପ—
Sinchardā(rde)ibā The causative of Sinchārdā
ছিটান सींचाना

ସିଞ୍ଚଣା—ଦେ. ବ ( ସ. ସେଚନ )—ସିଞ୍ଚନ ( ଦେଖ )
Sinchanā — Sinchana ( See )

ସିଞ୍ଚନ୍—ସ. ବଣ. ପୁଂ ( ସିଚ୍ ଧାତୁ+କର୍ତ୍ତୃ ଶତୃ [ ଅତ ]; ସିଞ୍ଚତ୍
Sinchan ଶବ୍ଦର ୧ମା. ୧ବ)—ସେଚନକାରୀ—Sprinkling
[ ସୀଞ୍ଚନ୍ତୀ, ସୀଞ୍ଚନ୍ତୀ—ସ୍ତ୍ରୀ ]

ସିଞ୍ଚନ—ସଂ. ବ (ସିଚ୍ ଧାତୁ+ ଭାବ. ଅନ) — ସେଚନ — Sprink-
Sinchana ling. [ ଦ୍ର—ପ୍ରାଚୀନ ସଂସ୍କୃତରେ 'ସିଞ୍ଚନ' ପ୍ରୟୋଗ ଦେଖାଯାଏ । ପରବର୍ତ୍ତୀ କାଳରୁ ଏହି ଶବ୍ଦ ସ୍ଥାନରେ 'ସେଚନ' ପ୍ରୟୋଗ ହେଉଅଛି । ]

ସିଞ୍ଚା—ଦେ. ବ ( ସଂ. ସିଚ୍ ଧାତୁ; ସିଞ୍ଚନ )—ଛିଞ୍ଚା; ଛିଞ୍ଚିବା କ୍ରିୟା—
Sinchā Sprinkled. [ ଉ—ଚନ୍ଦନ ଜଳ ସିଞ୍ଚା ତହିଁରେ
ছিঁটা सींचा ହୋଇଛି—କୃଷ୍ଣସିଂହ. ମହାଭାରତ. ଅଦ । ]
ছেঁটা सींचा ଦେ. ବଣ—ଛିଞ୍ଚା ହୋଇଥିବା; ସିକ୍ତ—
Sprinkled.

ସିଞ୍ଚା(ଞ୍ଚେ)ଇବା—ଦେ. କ୍ରି ( ସଂ. ସିଚ୍ ଧାତୁ ଣିଜନ୍ତ )—ଅନ୍ୟଦ୍ୱାରା
Sinchā(nche)ibā ସେଚନ କ୍ରିୟା କରାଇବା—To cause
ছিঁটান सींचाना to sprinkle. [ ଉ—କପାଟେ କର୍ପୂର ଗାଳ ଅଣି ସ୍ୱଚ୍ଛା ସିଞ୍ଚାଇ ସନ୍ଧ୍ୟା ସ୍ୱାଟେ—ରାଧାନାଥ ଦେବଣୀ । ]

ସିଞ୍ଚାଡ଼ିବା—ଦେ. କ୍ରି ( ସଂ ସଞ୍ଚାଳନ )—୧ । ଛିଞ୍ଚାଡ଼ିବା; ଇତସ୍ତତଃ
Sinchārdibā ସଞ୍ଚାଳନ କରିବା—1. To wave to and
ছিটান छींटना fro. ୨ । ଇତସ୍ତତଃ ପକାଇବା ବା ବୁଣିବା—
2. To strew.

ସିଞ୍ଚାଣି—ଦେ. ବ ( ସଂ ସିଞ୍ଚନ )— ସିଞ୍ଚନ ( ଦେଖ )
Sinchāni — Sinchana ( See )

ସିଞ୍ଚା ବିଞ୍ଚା—ଦେ. ବ ( ସହଚର )—ସିଞ୍ଚିବା କର୍ମ ଓ ବିଞ୍ଚିବା କର୍ମ—
Sinchā binchā The act of sprinkling and fan-
सींचा पंखा लगाना ning. [ ଉ—କେତେ ସିଞ୍ଚା ବିଞ୍ଚାରେ ଜ୍ଞାନ ହେବାରୁ ସେ କହିଲେ—ସଳକଣ୍ଠ ଦାସ. ଗିରିକ ଭ୍ରମାୟୁନ । ]

ସିଞ୍ଚିତ—ଦେ. ବଣ ( ସଂ. ସିକ୍ତ )—ଛିଞ୍ଚା ଯାଇଥିବା—
Sinchita — Sprinkled.

ସିଞ୍ଚିତା—ସଂ. ବ—ପିପ୍ପଳୀ ( ଶବ୍ଦକଳ୍ପଦ୍ରୁମ )—
Sinchitā — Long pepper.

ସିଞ୍ଚିବା—ଦେ. କ୍ରି ( ସଂ. ସିଚ୍ ଧାତୁ )—୧ । ସିଞ୍ଚିବା; ସେଚନ
Sinchibā କରିବା—1. To sprinkle. [ ଉ—ଅଗ୍ନାର
ছিঁটা ଉତ୍ତପ୍ତ କାଞ୍ଚ ଗୋ; ବନ୍ଧୁ ପ୍ରେମମଞ୍ଚ ଯୋଡଣ ଭୁବନରେ
सींचना ଉଛୁଳାଇ ତହିଁ ସିଞ୍ଚି ଗୋ—ବାଳକୃଷ୍ଣ. ଫୁଲ ବଉଳ-
ବେଣୀ । ] ୨ । ଜଳାର୍ଦ୍ର କରିବା—2. To moisten. [ ଉ—ପୃଥ୍ୱୀର ଶୋକ ଅଗ୍ନି ଲାଗିବାରୁ, ସିଞ୍ଚିଲେ ବୃହଦଶ୍ୱ ବାଣୀ ଅମୃତରୁ—କୃଷ୍ଣସିଂହ. ମହାଭାରତ. ବନ । ]

ସିଞ୍ଜା—ସ. ବ—ଶିଞ୍ଜା; ଅଳଙ୍କାରଧ୍ୱନି (ଶବ୍ଦକଳ୍ପଦ୍ରୁମ)—The tink-
Sinjā ling sound of ornaments. ଦେ. ବ ( ସଂ ଶିଞ୍ଜିନୀ )—ଧନୁର ଗୁଣ—The string of a bow.

ସିଟ୍—ବୈଦେ. ବ—୧ । (ଇଂ ଶୀଟ୍) ନକ୍ସାର ବା କାଗଜର ଫର୍ଦ୍ଦ—
Sit 1. A sheet of map or paper. ୨ । ( ଇଂ.
সিট ସୀଟ୍ ) ଛାତ୍ରାବାସରେ ଛାତ୍ରଙ୍କର ରହିବାର ସ୍ଥାନ—
सिट 2. The seat of student in a hostel. ୩ । ସିନେମା, ଥିଏଟର,ସର୍କସ ବା ସଭାସମିତିରେ ଦର୍ଶକଙ୍କ ବସିବାର ସ୍ଥାନ—3. The seat of the audience in a cinema, circus or meeting etc. ୪ । ଆସନ —4. Seat.

ସିଟ୍(ଟି)କା—ଦେ. ବ ( ସଂ. ଶୀତ୍କାର )—ଛିଟିକା; ଛିଞ୍ଚାଡ଼ିବା—
Sit-(ti)kā সিটিকান छिटका Strewing
সিটিকান ଦେ. ବଣ. ପୁଂ—ସଞ୍ଚାଳନକାରୀ—Waving to
छिटनेवाला and fro. [ ଉ—ନାକ ସିଟ୍କା=ଯେ ନାକରୁ
[ସିଟ୍କୀ, ସିଟ୍କେଇ—ସ୍ତ୍ରୀ] ସିଟ୍କାଏ । ]

ସିଟ୍କା(କେ)ଇବା—ଦେ. କ୍ର ( ସଂ ଶୀତ୍କାର )—ଛିଞ୍ଚାଡ଼ିବା; ଛିଟ୍କା-
Sit-kā(ke)ibā ଇବା; ଉତ୍କ୍ଷିପ୍ତ କରିବା; ଇତସ୍ତତଃ ସଞ୍ଚାଳନ
সিটকান छिटकाना କରିବା—To wave; to move to and fro.

ସିଟ୍(ଟି)କିଣି—ଦେ. ବ—ଛିଟ୍କିଣି ( ଦେଖ )
Sit-(ti)kini — Chhit-kini ( See )

ସିଟ୍କିଣି—ପ୍ରାଦେ ( ବସ୍ତର ) ବ—ବେଡ଼ି ( ଦେଖ )
Sit-kini — Berdi ( See )

ସିଟ୍(ଟି)କିବା—ଦେ. କ୍ରି—ଛିଟ୍କିବା ( ଦେଖ )
Sit-(ti)kibā — Chhit-kibā ( See )

ସିଟ(ଠ, ଠ, ଠା)—ଦେ. ବ—ଶିଟ ( ଦେଖ )
Sita (ta, tha, thā) — Sita (See)

ସିଟ(ଠ,ଠି)କରଣ—ଦେ. ବ—ଶ୍ରେଷ୍ଠ କରଣ ( ଦେଖ )
Sita(tha, thi)karana — Sreshtha karana (See)

ସିଟାମ୍—ବୈଦେ. ବ [ ଇଂ. ଷ୍ଟାମ୍ପ୍ ]—୧ । ଷ୍ଟାମ୍ପ; ଦଲିଲ ଅଦି
Sitām ଲେଖାହେବା ପାଇଁ ସରକାରଙ୍କ ଛାପା ମରା କାଗଜ—
सिटाम स्टाम्प 1. Stamp for writing document.
୨ । ଡାକଟିକଟ—2. Postage stamp.

ସିଟାମ୍ ଫରେସ [ଫୁରୁସ୍, ଭେଣ୍ଡର୍]—ବୈଦେ. ବ [ ଇଂ. ଷ୍ଟାମ୍ପ+
Sitām pharos [phurus, bhendar] ଫା. ଫରୋସ୍; ଇଂ,
सिटामफरोश, सिटाम वेण्डर ଭେଣ୍ଡର୍ ]—ସରକାରରୁ ଲାଇସେନ୍ସ.

स्टाम्प फरोस — ପ୍ରାପ୍ତ ସରକାରୀ ଷ୍ଟାମ୍ପ ବିକ୍ରେତା—Licensed stamp vendor.

**ସିଟାମ୍ ଭେଣ୍ଡରୀ**—ଦେ. ବ—ଷ୍ଟାମ୍ପ ଭେଣ୍ଡରର କାର୍ଯ୍ୟ—Sitām bhendari The work of a stamp vendor. সীটাম ভেণ্ডরী स्टाम्प मेफ़रौ

**ସିଠାଳ**—ଦେ. ବଣ—୧ । ମହମ ସିଠା ପରି—1. Waxen. ୨ । Sitala সীটে चपचपाया ଅଠାଳିଆ—2. Gummy. (ସିଠାଳିଆ—ଅନ୍ୟରୂପ) সীটান ୩ । ସିଠା ପରି ବର୍ଣ୍ଣ—सीठियाया 3. Pale as wax; wan.

**ସିଟି(ଠି)**—ଦେ. ବ (ସଂ. ସିତ୍କାର; 'ଶୀ' ଧ୍ୱନି)—୧ । ମୁହଁଦ୍ୱାରା Siti(ṭhi) ସାର୍ଦ୍ଧ 'ଶୀ ଶୀ' ଧ୍ୱନି—1. Whistling sound সিটি सीटी by the lips. ୨ । ମୁହଁଦ୍ୱାରା ଫୁଙ୍କି ସାର୍ଦ୍ଧ 'ଶୀ' ଧ୍ୱନି କରିବାର ଯନ୍ତ୍ର—2. A whistle. ବୈଦେ. ବ. (ଇଂ. ସିଟି) ସହର; ନଗର—City (e. g. Patna city).

**ସିଟିଙ୍ଗ୍**—ବୈଦେ. ବ (ଇଂ. ସିଟିଙ୍ଗ୍)—ସଭାସମିତିର ଅଧିବେଶନ—Siting সিটিং सिटिं Sitting (of an association). (ସିଟିଂ—ଅଶୁଦ୍ଧ ବନାନ)

**ସିଟି ଦେବା (ମାରିବା)**—ଦେ. କ୍ରି—୧ । ମୁଖଦ୍ୱାରା ସାର୍ଦ୍ଧ 'ଶୀ' ଧ୍ୱନି Siti debā (māribā) କରିବା—1. To whistle with সিটি দেওয়া, সিটি মারা the mouth. ୨ । ସିଟି ଯନ୍ତ୍ରଦ୍ୱାରା सीटी देना ଧ୍ୱନି କରିବା—2. To sound a whistle.

**ସିଠ**—ପ୍ରାଦେ (ଭାଳଚେର) ବ—ଶ୍ରେଷ୍ଠିକରଣ; ରାଜାଙ୍କର ହିସାବ Sitha ପତ୍ର ବୁଝିବା କର୍ମଚାରୀ—An accountant of a Rājā.

ଦେ. ବ ଓ ବଣ—ସିଠା (ଦେଖ)—Sithā (See)

**ସିଠା**—ଦେ. ବ—୧ । ଶିଠା (ଦେଖ)—1. Sithā (See) Sithā সিঠা सीठा ୨ । ମହୁ ଶିଠା; ମହମ—Beeswax. সিঠা गोंद ୩ । ଅମ୍ବ, ପଣସ, ସଜନା ଆଦି ଗଛରୁ ବହି ଅଳ୍ପ ଶୁଖି ଯାଇଥିବା ରସ ଅଠା—3. Dried juice or gum of certain trees, such as, mango, jack, etc. [ଉ—ଅମ୍ବ ସିଠା, ସଜନା ସିଠା, সিঠা ପଣସ ସିଠା ।] ୪ (ଅବଶିଷ୍ଟ) କୌଣସି ଦ୍ରବ୍ୟରୁ ରସ ବା सीठा ନିର୍ଯ୍ୟାସ ବାହାର କରି ନେବା ପରେ ଦ୍ରବ୍ୟର କଠିନ ଅଂଶ—4. Refuse of any matter after the juice has been squeezed. [ଉ—କାଶେଷ କରି ପୀୟୂଷ ପିଇବାରୁ ରହିଛି ସିନା ମାତର ସିଠା—ଭକ୍ତ. କୋବିଦ୍ଭୂଷଣଦାସ ।] ୫ । ଗଞ୍ଜେଇ ବା ଭାଙ୍ଗକୁ ମରଚ ଆଦି ସଙ୍ଗେ ବାଟି ବଟା ଜିନସକୁ ପାଣିରେ ଗୋଳାଇ ତାକୁ କନାରେ ଛାଣି ନେବା ପରେ କନାରେ ଅବଶିଷ୍ଟ ରହିଥିବା ଗରଡ଼ା ଅଂଶ—5. Dregs of Bhang after it is silted. ୬ । ତେଲର ତାଳି—6. The sediment at the bottom of an oil vessel. ପ୍ରାଦେ (ପୁରୀ) ବ—ସେଠା; ସେ ସ୍ଥାନ—That place.

**ସିଠାଳିଆ** ଦେ. ବଣ—ସିଠା ପରି ବର୍ଣ୍ଣ; ସିଠାଳିଆ—Waxen; সিটে सिठाकाजैसा pale as wax. [ଉ—ଜରରୋଗୀର ତା ମୁହଁ ସିଠା ପଡ଼ି ଗଲାଣି ।]

**ସିଠାକା**—ପ୍ରାଦେ (ପୁରୀ) ବଣ—ସେଠାକା (ଦେଖ) Sithākā Sethākā (See)

**ସିଠାକାର**—ପ୍ରାଦେ (ପୁରୀ) ବଣ—ସେଠାକାର (ଦେଖ) Sithākāra Sethākāra (See)

**ସିଠାକୁ**—ପ୍ରାଦେ (ପୁରୀ) ବ—ସେଠାକୁ (ଦେଖ) Sithāku Sethāku (See)

**ସିଠାମ (ଇତ୍ୟାଦି)**—ବୈଦେ. ବ—ସିଟାମ୍ ଇତ୍ୟାଦି (ଦେଖ)—Sithāma (etc) Sitām etc (See) [ଉ—ତୁଲ ସଭା ମଧ୍ୟରେ ସିଠାମ ବଣା, କଲ୍ଲ ଛଠା, ବାଘ ହୋଇଚଲେ—ଫକୀରମୋହନ. ଛ ମାଣ ଅଠଗୁଣ୍ଠ ।]

**ସିଠାରୁ**—ପ୍ରାଦେ. (ପୁରୀ) ବ—ସେଠାରୁ (ଦେଖ) Sithāru Sethāru (See)

**ସିଠାଳ**—ଦେ. ବଣ—ସିଠାଳ (ଦେଖ)—Sitāla (See) Sithāla (ସିଠାଳିଆ—ଅନ୍ୟରୂପ)

**ସିଠି(ଠିଁ)**—ପ୍ରାଦେ. (ପୁରୀ) ବ—ସେଠାରେ (ଦେଖ) Sithi(thiñ) Sethāre (See)

**ସିଠିକା**—ପ୍ରାଦେ. (ପୁରୀ) ବଣ—ସେଟିକା (ଦେଖ) Sithikā Sethikā (See)

**ସିଠିକାର**—ପ୍ରାଦେ. (ପୁରୀ) ବଣ—ସେଟିକାର (ଦେଖ) Sithikāra Sethikāra (See)

**ସିଠିକି**—ପ୍ରାଦେ. (ପୁରୀ) ବ—ସେଠିକି (ଦେଖ) Sithiki Sethiki (See)

**ସିଠୁ(ଠୁଁ)**—ପ୍ରାଦେ (ପୁରୀ) ବ—ସେଠୁ (ଦେଖ) Sithu(thuñ) Sethu (See)

**ସିଠୁଆ**—ଦେ. ବଣ—୧ । ସିଠାକ; ସିଠାପରି ପରିତ୍ୟକ୍ତ, ବା ଅକା- Sithuā সিঠা सिठाकाजैसा ମୂଳ—1. Left as refuse. সিঠান सीठियाया ୨ । ବର୍ଣ୍ଣ—2. Pale-coloured. [ଉ—ମୁହଁ ସିଠୁଆ କଲା ପଡ଼ିଯାଇଛି—ଫକୀରମୋହନ. ଗଳ୍ପସ୍ୱଳ୍ପ ।]

**ସିଠେଇଁ**—ପ୍ରାଦେ. (ପୁରୀ) ବ—ସେଠେଇଁ (ଦେଖ)—Setheiñ Sitheiñ (See) [ଉ—ସର୍ବାମାନେ ତ ଥରେ ସିଠେଇଁ ରହିଲେ—ଗାଳବଧ. ଶିଶୁଙ୍କ ଗ୍ରନ୍ଥାବଳୀ ।]

**ସିଢ଼(ଢ଼)**—ଦେ. ବ (ସଂ. ସିଧାରୁ—ବନ୍ଧନ କରିବା)—୧ । ସେଢ଼ Sirda(rdha) (ଦେଖ)—1. Serda (See) ୨ । ପୁଞ୍ଜା পাঁজ पीर ତାଟିବା ପାଇଁ ପେଣା ତୁଳାରେ ତିଆର କରି ଯାଇଥିବା କଳଣା—2. Roll of carded cotton পাল used in spinning yarn. ୩ । (ଜାହାଜ- पाल ରେ) ଜାହାଜର ପାଲ—3. The sail of a ship. রশি ୪ । ଜାହାଜର ପାଲ ବନ୍ଧା ରସି—4 The rope रस्सी or riggings of the sail.

ସିଢ଼(ଢ଼) ହଙ୍କାରିବା—ଦେ. କ୍ରି—ସେଢ଼ ହଙ୍କାରିବା ( ଦେଖ )
Sirda(rdha) hankāribā Serda hankāribā (See)

ସିଢ଼ି(ଢ଼ି)—ଦେ. ବି ( ସଂ ଶ୍ରେଣୀ; ନିଃଶ୍ରେଣୀ, ଡ୍ରିଷ୍ଟି [Beams])—
Sirdi(rdhi) ୧ । ନିଃଶ୍ରେଣୀ; ନିଶୁଣୀ—1. Ladder. ୨ । ସୋପାନାବଳୀ; ପାବଚ୍ଛଚୟ—2. Flight of steps.

ସିଢ଼ୁ(ଢ଼ୁ)ଆ—ଦେ. ବିଣ—ନିଶୁଣୀ ପରି ସରୁ—Narrow like a
Sirdu(rdhu)ā ladder. ଦେ. ବି (ନାମ)—( ଏହା ସିଁଡିର ମତ ପୂର୍ବେ ଅଛି ସରୁ ଥିବାରୁ ) କଟକ ସହରର ପୂର୍ବ ସୋଢ଼ୀକା ଜୈସା ପ୍ରାନ୍ତରେ ଏକ ମାଇଲଠାରୁ କାଠଯୋଡ଼ିରୁ ବାହାରିଥିବା କାଠଯୋଡ଼ି ନଦୀର ଗୋଟିଏ ଶାଖା, ଯାହା ୫।୬ ମାଇଲ ପରେ ପୁଣି କାଠଯୋଡ଼ି ସଙ୍ଗେ ମିଶିଅଛି)—A river branching from the Kāthjori river about one mile from the eastern extremity of the town of Cuttack and meeting it again after a course of 5 or 6 miles.

ସିଢ଼—ଦେ. ବି—ସିଡ଼ ( ଦେଖ )
Sirdha Sirda ( See )

ସିଣି ସିଣିଆ—ପ୍ରାଦେ. (କଟକ) ବିଣ—ଫମ୍ଫେରିଅ; ସରଦି ଲାଗି ସାମାନ୍ୟ ଫୁଲିଥିବା (ମୁହଁ)—A little swollen
Sini siniā ଫନ୍‌ଫନେ on account of cold (face).
ଫନଫନ, ଫନଫନିୟା ପ୍ରାଦେ. ( ବାଲେଶ୍ୱର ) ବିଣ—ହଣାସଣା; ଅବଢ଼ଅ; ଅକଳଅ—Awkward. [ ଭ—ଗ୍ରୀଷ୍ମ ତେଲ ଲଗାଇଲେ କମିଛ ସିଣିସିଣିଆ ଲାଗେ ।]

ସିଣ୍ଡିକେଟ୍—ବୈଦେ. ବି (ଇଂ)—ବିଶ୍ୱବିଦ୍ୟାଳୟର ଶାସନକାର୍ଯ୍ୟ
Sindiket ପରିଚାଳକ ସଭା—The syndicate of a uni-
ସିଣ୍ଡିକେଟ versity. [ ଭ—ଏଥିର ସଭ୍ୟଙ୍କୁ ଫେଲୋ
ସିଁଡ଼ିକେଟ (Fellow) ବୋଲଯାଏ ।]

ସିତ୍-ଲି—ପ୍ରାଦେ. (ସମ୍ବଲପୁର) ବି—ଜଳାଭୂମି; ଜୋଡ଼—
Sit-li Marshy land; marsh; a moor.

ସିତ—ସଂ ବି (ସୋ ଧାତୁ=ନାଶ କରିବା, ଅଥବା ସି ଧାତୁ=ବନ୍ଧନ
Sita କରିବା+କର୍ତ୍ତୃ. ତ)—୧ । ଶୁକ୍ଳବର୍ଣ୍ଣ ( ଅମର )—1. White colour. ୨ । ରୌପ୍ୟ (ଶବ୍ଦ କଳ୍ପଦ୍ରୁମ)—2. Silver. ୩ । ମୂଳକ; ମୂଳା (ଶବ୍ଦ କଳ୍ପଦ୍ରୁମ)—3. Radish. ୪ । ଚନ୍ଦନ (ରତ୍ନମାଳା)—4. Sandal. ୫ । ଦୈତ୍ୟଗୁରୁ ଶୁକ୍ରାଚାର୍ଯ୍ୟ ( ଶବ୍ଦ ରତ୍ନାବଳୀ )—5. The sage 'Sukra'; the preceptor of the demons. ୬ । ଶର; ବାଣ (ଧ୍ୱନି ମଞ୍ଜରୀ)—6. Dart; arrow. ୭ । ଶ୍ୱିତ୍ର; ଶ୍ୱେତକୁଷ୍ଠ (ବୈଦ୍ୟକ)—7. Vitiligo; leucoderma; albino. ୮ । ଶୁକ୍ର ଗ୍ରହ (ହ୍ରୁ. ଶ)—8. The planet Venus. ୯ । ଶୁକ୍ଳପକ୍ଷ (ହ୍ରୁ. ଶ)—9. The bright fortnight of a lunar month. ୧୦ । ଚିନି (ହ୍ରୁ ଶ)—10. White sugar. ୧୧ । ଧଳା କାଞ୍ଚନ ଗଛ (ହ୍ରୁ. ଶ)—11. The white flowered Kānchana tree. ୧୨ । ସ୍କନ୍ଦଙ୍କ ଅନୁଚର ବିଶେଷ (ହ୍ରୁ. ଶ)—12. Name of one of the attendants of Skanda. ୧୩ । ଭୂର୍ଜ ପତ୍ର (ହ୍ରୁ. ଶ)—13. The leaves of Birch tree. ୧୪ । ଧଳା ରାଶି (ହ୍ରୁ. ଶ)—14. White sesamum seed. ସ. ବିଣ. ପୁଂ—୧ । ଶୁକ୍ଳ; ଧଳା ( ଅମର )—1. White. (ସିତା—ସ୍ତ୍ରୀ) ୨ । (ଷି ଧାତୁ=ବନ୍ଧନ କରିବା+କର୍ମ. ତ)—ଅବସିତ; ସମାପ୍ତ; (ମେଦି)—2. Finished. ୩ । ଜ୍ଞାତ; ଜ୍ଞାତ (ମେଦି)—3. Known. ୪ । ବଦ୍ଧ (ମେଦି)—4. Bound down; tied; fastened. ୫ । ଉଜ୍ଜ୍ୱଳ (ହ୍ରୁ. ଶ)—5. Bright. ୬ । ଚକଚକିଆ (ହ୍ରୁ. ଶ)—6. Glittering; dazzling. ଦେ. ବି (ସଂ, ସୀତାରାମ )—ସୀତାରାମଙ୍କ ଡାକ ନାମ—Nickname for Sītārāma.

ସିତ କଙ୍ଗୁ—ସ. ବି—ସର୍ଜ ନିର୍ଯ୍ୟାସ (ହ୍ରୁ. ଶ)—
Sita kangu Gum-resin.

ସିତ କଣ୍ଟା—ସ. ବି—ଶ୍ୱେତ କଣ୍ଟକାରି (ରାଜନିର୍ଘଣ୍ଟୁ) ( ଦେଖ )
Sita kantā Sweta kantakāri ( See )
(ସିତ କଣ୍ଟାରିକା—ଅନ୍ୟରୂପ)

ସିତ କଣ୍ଠ—ସ. ବି (ବହୁବ୍ରୀହି; ସିତ=ଶୁକ୍ଳ ଅଟେ କଣ୍ଠ ଯାହାର)—
Sita kantha ଦାତ୍ୟୂହ ବା ଡାହୁକ ପକ୍ଷୀ—Moor hen Rallus Aquaticus. ସ. ବିଣ. ପୁଂ—ଶ୍ୱେତ ବର୍ଣ୍ଣ କଣ୍ଠ ବିଶିଷ୍ଟ—White-necked.

ସିତ କର—ସ. ବି (ସିତ=ଶୁକ୍ଳ ଅଟେ କର=କର ଯାହାର; ବହୁବ୍ରୀହି)—୧ । ଚନ୍ଦ୍ର—1. The moon. ୨ ।
Sita kara କର୍ପୂର—2. Camphor.

ସିତ କର୍ଣ୍ଣୀ—ସ. ବି—ବାସଙ୍ଗ (ରାଜ ନିର୍ଘଣ୍ଟୁ) ( ଦେଖ )
Sita karnni Bāsanga ( See )

ସିତକାଂଶୁ—ସ. ବି—ସିତାଂଶୁ ( ଦେଖ )
Sitakāmsu Sitāmsu ( See )

ସିତ କୁଞ୍ଜର—ସ. ବି—୧ । (କର୍ମଧା) ଶ୍ୱେତ ହସ୍ତୀ—1. White
Sita kunjara elephant. ୨ । (ବହୁବ୍ରୀହି) ଇନ୍ଦ୍ର—2. God Indra, the God of rains. ୩ । (କର୍ମଧା) ଇନ୍ଦ୍ରଙ୍କ ହସ୍ତୀ; ଐରାବତ—3. The elephant of Indra, the God of rains.

ସିତ କୁମ୍ଭୀ—ସ. ବି—ସିତ ପାଟଳା ( ଦେଖ )
Sita kumbhī Sita pātalā ( See )

ସିତ କ୍ଷାର—ସ. ବି—ସୁହାଗା ( ଦେଖ )
Sita kshāra Borax.

ସିତ ଗୁଞ୍ଜା—ସ. ବି—ଶ୍ୱେତ କାଇଞ୍ଚ (ରାଜ ନିର୍ଘଣ୍ଟୁ)—The white
Sita gunjā variety of Kāincha seeds.

ସିତ ଚିହ୍ନ—ସଂ. ବ (ବହୁବ୍ରୀହି)—ବଲ୍କିକା ଗଡ଼; ଛୋଟ ଶକଳଯୁକ୍ତ ମାଛ
Sita chihna (ଡାକ୍ତବଲୀ)—A sort of small scaly fresh waterfish.

ସିତଚ୍ଛତ୍ର—ସଂ. ବ—ରାଜଛତ୍ର (ଶବ୍ଦକୋଷ)—The umbrella
Sitachchhatra of royalty.

ସିତଚ୍ଛତ୍ରା(ତ୍ରୀ)—ସଂ. ବ—ଶତ ପୁଷ୍ପା; ଶଉଫ—
Sitachchhatrā(trī) Fenugreek.

ସିତଚ୍ଛତ୍ରିତ—ସଂ. ବଣ. ପୁ° ( ସିତଛତ୍ର+ସଞ୍ଜାତାର୍ଥେ. ଇତ )—
Sitachchhatrita ଶ୍ୱେତ ଛତ୍ରଯୁକ୍ତ (ରାଜା)—(the king) Having a white umbrella held over him.

ସିତଚ୍ଛଦ—ସଂ. ବ ( ବହୁବ୍ରୀହି; ସିତ=ଶୁକ୍ଳ ଅଟେ ଛଦ=ପକ୍ଷ
Sitachchhada ଯାହାର)—୧ । ରାଜ ହଂସ (ହେମଚନ୍ଦ୍ର)—
1. Swan. ୨ । ହଂସ—2. Drake, ୩ । ରକ୍ତ ଶୋଭାଞ୍ଜନ (ହୃ. ଶ)—3. The red flowered variety of Moringa tree.

ସିତଚ୍ଛଦା—ସଂ. ବ (ବହୁବ୍ରୀହି)—ଶ୍ୱେତ ଦୁବ୍ବା ( ରାଜ ନିର୍ଘଣ୍ଟ )—
Sitachchhadā The white Doob grass.

ସିତଜା—ସଂ. ବ—ସିତାଖଣ୍ଡ (ଦେଖ)
Sitajā Sitākhaṇḍa. (See)

ସିତତା(ତ୍ୱ)—ସଂ. ବ (ସିତ+ଭାବାର୍ଥେ. ତା; ତ୍ୱ)—ଶୁକ୍ଳତା—
Sitatā(twa) Whiteness.

ସିତ ଦର୍ଭ—ସଂ. ବ (କର୍ମଧା)—ଶ୍ୱେତକୁଶ ( ରାଜନିର୍ଘଣ୍ଟ )—The
Sita darbha white variety of Kuśa grass

ସିତ ଦୀଧିତି—ସଂ. ବ ( ବହୁବ୍ରୀହି; ସିତ=ଶୁକ୍ଳ+ଦୀଧିତି=କିରଣ
Sita dīdhiti ଯାହାର)—ଚନ୍ଦ୍ର—The moon.

ସିତଦୀପ୍ୟ—ସଂ. ବ—ଶ୍ୱେତ ଜୀରକ (ରାଜନିର୍ଘଣ୍ଟ)—The white
Sitadīpya variety of cumin seed.

ସିତଦୁର୍ବା(ବ୍ବା)—ସଂ. ବ—ଶ୍ୱେତ ଦୁବ୍ବା (ରତ୍ନମାଳା) (ଦେଖ)
Sita dūrbā(rbbā) Śweta dūrbā. (See)

ସିତ ଦ୍ୱିଜ—ସଂ. ବ (କର୍ମଧା)—ରାଜ ହଂସ—
Sita dwija Swan.

ସିତଦ୍ରୁ—ସଂ. ବ (କର୍ମଧା)—୧ । ଶୁକ୍ଳବର୍ଣ୍ଣବିଶିଷ୍ଟ ବୃକ୍ଷ—1. A
Sitadru white tree. ୨ । ମୋରଟ ବିଶେଷ; ମୁରୁଗା (ସିତଦ୍ରୁମ—ଅନ୍ୟରୂପ) ଘାସ—2. A sort of grass; Sanserveira Zeylanica. ୩ । ଅର୍ଜୁନ ଗଛ (ହୃ. ଶ)-
3, The Arjuna tree.

ସିତ ଧାତୁ—ସଂ. ବ—୧ । ଶୁକ୍ଳ ଧାତୁ—1. White metal. ୨ ।
Sita dhātu ଚଠିଖ; ଖଡ଼ି (ରାଜନିର୍ଘଣ୍ଟ)—2. Chalk.

ସିତ ପକ୍ଷ—ସଂ. ବ—୧ । (କର୍ମଧା) ଶୁକ୍ଳ ପକ୍ଷ—1. The bright
Sita paksha fortnight of the lunar month.
୨ । ( ବହୁବ୍ରୀହି ) ରାଜହଂସ ( ଶବ୍ଦରତ୍ନାବଳୀ )—
2. The swan.

ସିତପର୍ଣ୍ଣୀ—ସଂ. ବ—ଅର୍କ ପୁଷ୍ପିକା ବୃକ୍ଷ (ରତ୍ନମାଳା)—
Sitaparṇṇī A plant; Calotropis Gigantea.

ସିତ ପଞ୍ଚଦଶୀ—ସଂ. ବ—ପୂର୍ଣ୍ଣିମା—
Sita pañchadaśī Fullmoon.

ସିତ ପାଟଳା—ସଂ. ବ—ଶ୍ୱେତପାଟଳ ଗଛ; ଶୁକ୍ଳ ପାଟଳା ବୃକ୍ଷ; ଶୁକ୍ଳ
Sita pāṭalā ପୁଷ୍ପଯୁକ୍ତ ପାଟଳ ଗଛ—The white-
(ସିତ ପାଟଳିକା—ଅନ୍ୟରୂପ) flowered variety of
श्वेतपारुल् Pāṭali tree. [ଦ୍ର—ଉଷ୍ଣବୀର୍ଯ୍ୟ,
श्वेतपाडरी ଲଘୁ, ରୁକ୍ଷ; ବାତହନ୍ତ୍ରୀ, କଫ,
ମ. ଶ୍ୱେତପାଡଲ ଶ୍ରମ, ଶୋଥନାଶକତ୍ୱ ଏହାର ଗୁଣ
ସଂ. ପର୍ଯ୍ୟାୟ—ସିତକୁମ୍ଭୀ, ଅଟେ ।]

ଫଲେରୁହା, ସିତାମୋଘା, କୁବେରାକ୍ଷୀ, ଶ୍ୱେତାହ୍ୱା, କାଷ୍ଠପାଟଳା,
ଧବଳପାଟଳୀ ]

ସିତପୁଙ୍ଖା—ସଂ. ବ—ସିତଶାୟକା (ଦେଖ)—
Sitapuṅkhā Sita śāyakā (See)

ସିତପୁଷ୍ପ—ସଂ. ବ—୧ । ବେଣ୍ଣାମୂଳକ; ବେଣୀଖିଅ ମୁଥା (ଚରକ-
Sita pushpa ଧର)—1. A large-bulbed variety of grass root. ୨ । ତଗର ବୃକ୍ଷ (ଶବ୍ଦରତ୍ନାବଳୀ)—2. A white-flowering plant.
୩ । ଶ୍ୱେତ ରୋହିତ; ଶ୍ୱେତ ସୁଆମ ଗଛ (ରାଜନିର୍ଘଣ୍ଟ)—
3. A white variety of the Suāma (a timber tree). ୪ । କାଶ (ରାଜନିର୍ଘଣ୍ଟ—
4. A white flowered reed. ୫ । ଏକ ପ୍ରକାର ଆଖୁ (ହୃ. ଶ)—5. A kind of sugarcane. ୬ । ଶିରିଷ ଗଛ (ହୃ. ଶ)—6. Albizza Lebbek (tree) ୭ । ଶ୍ୱେତ ଖଜୁରି (ହୃ. ଶ)—7. A kind of white date (palm).

ସିତପୁଷ୍ପା—ସଂ. ବ—୧ । ମଲ୍ଲିକା (ଶବ୍ଦରତ୍ନାବଳୀ)—1. Jasmine.
Sitā pushpā ୨ । ବଳା; ବାଉଁଶଳା; ବଳାମୂଳି (ହୃ. ଶ)—
2. Sida Cordifolia.

ସିତପୁଷ୍ପୀ—ସଂ. ବ—୧ । ଶ୍ୱେତାପରାଜିତା (ରାଜନିର୍ଘଣ୍ଟ)—1. The
Sita pushpī white variety of Clitoris flower.
୨ । ବେଣ୍ଣାମୂଳକ (ହୃ. ଶ)—2. A variety of bulbous rooted grass. ୩ । କାଶତୃଣ (ହୃ ଶ)
3. The Kāsa grass. ୪ । ନାଗବଲ୍ଲୀ; ପାନ
( ହୃ. ଶ )—4. The piper betel (creeper).

ସିତ ପ୍ରଭ(ରାଗ)—ସଂ. ବ (ବହୁବ୍ରୀହି, ଧଳ ଅଟେ ପ୍ରଭା ଯାହାର)—
Sita prabha(rāga) ରୁପା - Silver ସଂ. ବଣ.—
ଶ୍ୱେତ ବର୍ଣ୍ଣ ଯୁକ୍ତ—White.

ସିତ ବର୍ହ(ଇତ୍ୟାଦି)—ସଂ. ବ—ଶ୍ୱେତ ବର୍ହ ଇତ୍ୟାଦି (ଦେଖ)—
Sita barha(etc) Sweta barha etc (See)

ସିତ ବର୍ଷାଭୂ—ସଂ. ବ—ଶ୍ୱେତପୁନର୍ଣ୍ଣବା (ରାଜନିର୍ଘଣ୍ଟ)—The white
Sita barshābhū variety of hogweed.

ସିତ ବଲ୍ଲରୀ—ସଂ. ବ—ବଣଜାମୁ (ବୃ. ଶ)—
Sita ballarī The wild variety of black berry.

ସିତ ବଲ୍ଲୀଜ(ମରଚ)—ସଂ. ବ—ଶ୍ୱେତ ମରଚ (ଦେଖ)—
Sita ballīja (maricha) Śweta maricha (See)

ସିତବାଜୀ—ସଂ. ବ—(ବହୁବ୍ରୀହି, ସିତବାଜିନ୍; ୧ମା. ୧ବ)—ଅର୍ଜୁନ
Sitabājī (ବୃ. ଶ)—Arjuna.

ସିତ ବାର(ବାରକ)—ସଂ. ବ—ମଦରଙ୍ଗା ଶାଗ (ବୃ. ଶ)—
Sita bāra(bāraka) Alternanthera Sessilis (potherb).

ସିତ ମଣି—ସଂ. ବ—୧ । ଚନ୍ଦ୍ରକାନ୍ତ ମଣି—1. The moon-
Sita maṇi stone. ୨ । ସ୍ଫଟିକ; ସ୍ଫଟିକ ମଣି—2. Crystal; quartz.

ସିତ ମାଷ—ସଂ. ବ—ରାଜମାଷ; ଏକ ପ୍ରକାର ଧଳା ବିରି—
Sita māsha A kind of Phaseolus; Brihi.

ସିତମ୍ବର—ବେଦେ. (ଗ୍ରା) ବ (ଇଂ. ସେପ୍ଟେମ୍ବରର ଅଶୁଦ୍ଧ ଉଚ୍ଚାରଣ)
Sitambara ଇଂରେଜୀ ବର୍ଷର ନବମ ମାସ; ସେପ୍ଟେମ୍ବର
ସେପ୍‌ଟେମ୍ବର सितम्बर ମାସ—The month of Septem-
(ସିତମ୍—ଅପଭ୍ରଂଶ) ber.

ସିତରଞ୍ଜ—ସଂ. ବ (ବହୁବ୍ରୀହି)—କର୍ପୂର (ବୃ. ଶ)—
Sitarañja Camphor.

ସିତରଞ୍ଜନ—ସଂ. ବ—ପୀତବର୍ଣ୍ଣ (ହେମଚନ୍ଦ୍ର)
Sitarañjana Yellow colour.

ସିତ ରଶ୍ମି—ସଂ ବ (ବହୁବ୍ରୀହି; ସିତ ଅଟେ ରଶ୍ମି ଯାହାର)—
Sita raśmi ୧ । ଚନ୍ଦ୍ର—1. The moon. ୨ । କର୍ପୂର 2. Camphor.

ସିତ ରୁଚି—ସଂ. ବ (ବହୁବ୍ରୀହି, ସିତ ଶୁକ୍ଳ ବର୍ଣ୍ଣ+ରୁଚି=କିରଣ)-
Sita ruchi ଚନ୍ଦ୍ର—The moon. [ଉ—ସବନଙ୍କରେ ମୋର ନାମଟି ମଣ୍ଡିତ, ନୟନରେ ମୁହିଁ ବୋଲଇଁ ସିତରୁଚି ।—ବୃନ୍ଦାବନ. ମହାଭାରତ ଗୀତ ।]

ସିତଶାୟକା—ସଂ. ବ—ଶ୍ୱେତ ଶରପୁଙ୍ଖା ବା ବନ ନୀଳ—
Sita śāyakā (ରାଜନିର୍ଘଣ୍ଟ)—The white variety of Tephrosia.

ସିତ ଶିଂଶପା—ସଂ. ବ—ଶ୍ୱେତ ଶିଂଶପା ବୃକ୍ଷ—
Sita śiṁśapā The white variety of sissoo tree.

ସିତ ଶି(ସି)ବ—ସଂ. ବ—୧ । ସୈନ୍ଧବ ଲବଣ; ସୈନ୍ଧବ (ଦେଖ)-
Sita śi(si)ba 1. A variety of salt; rock-
[ଶୀତଶି(ସି)ବ—ଅପଭ୍ରଂଶ] salt. ୨ । ଶମୀ ବୃକ୍ଷ (ବୃ. ଶ)—2. Acacia Suma (tree).

ସିତ ଶିମ୍ବିକ—ସଂ. ବ—ଗୋଧୂମ (ହେମଚନ୍ଦ୍ର)—
Sita śimbika Wheat.

ସିତଶୂକ—ସଂ. ବ (ବହୁବ୍ରୀହି)—ଯବ (ବୃ. ଶ)—
Sitaśūka Barley (grain).

ସିତ ଶୂରଣ—ସଂ. ବ—ବନଶୂରଣ (ରାଜନିର୍ଘଣ୍ଟ)—
Sita śūraṇa The wild varety of arum.

ସିତଶୃଙ୍ଗୀ—ସଂ. ବ [ସିତ+ଶୃଙ୍ଗ+ଇନ୍; ୧ମା ୧ବ]—ଅତିବିଷା
Sitaśrungī [ବୃ. ଶ]—Aconite.

ସିତସପ୍ତି—ସଂ. ବ (ସିତ=ଶୁକ୍ଳ ଅଟେ ସପ୍ତି=ଅଶ୍ୱ ଯାହାର; ବହୁବ୍ରୀହି)-
Sita sapti ୧ । ମଧ୍ୟମ ପାଣ୍ଡବ ଅର୍ଜୁନ—1. The third Pāṇḍaba brother Arjjuna. ୨ । [କର୍ମଧା] ଶ୍ୱେତ ଅଶ୍ୱ—2. White horse.

ସିତ ସର୍ଷପ—ସଂ. ବ—ଗୌର ସର୍ଷପ; ଧଳା ସୋରିଷ [ରାଜନିର୍ଘଣ୍ଟ]
Sita sarshapa The white variety of rye.

ସିତ ସାଗର[ସିନ୍ଧୁ]—ସଂ. ବ—୧ । କ୍ଷୀର ସାଗର—1. The mytho
Sita sāgara sindhu logical sea of milk. ୨ । ଗଙ୍ଗା [ବୃ.ଶ] 2. The Ganges.

ସିତ ସାର (ସାରକ)—ସଂ. ବ [ଅପଭ୍ରଂଶ ଶିତସାର]—ଶାଳିଞ୍ଚ ଶାଗ;
Sita sāra (sāraka) ମଦରଙ୍ଗା (ରାଜନିର୍ଘଣ୍ଟ)—A sort of aquatic pot herb; Alternanthera Sessilis

ସିତସିଂହୀ—ସଂ. ବ—ଶ୍ୱେତ କଣ୍ଟକାରୀ (ରାଜନିର୍ଘଣ୍ଟ) (ଦେଖ)
Sitasiṁhī Śweta kaṇṭakārī (See)

ସିତା—ସଂ. ବଣ (ସିତ+ଆ)—ସିତର ସ୍ତ୍ରୀଲିଙ୍ଗ; ଶ୍ୱେତା; ଶୁକ୍ଳା—
Sitā Feminine of Sita (white). ସଂ. ବ—୧ । ଶ୍ୱେତ ଶର୍କରା; ଖଣ୍ଡ; ଚିନି; ନବାତ; ଖଣ୍ଡ (ରାଜନିର୍ଘଣ୍ଟ)—1. Bleached sugar; white sugar. [ଉ—ମାଧୁର୍ଯ୍ୟ ଲୋକରେ ଟାଣିଲେ ସିତା—ଉପେନ୍ଦ୍ରଭଞ୍ଜ. ଲାବଣ୍ୟ ।] ବ୍ରୁ—ଏହା ଶୁମଧୁର, ଶୁଚିଂ, ବାଇର୍ଦ୍ଧବାହକର, ଶୁକ୍ରକର, ତୃଷ୍ଣାଛର୍ଦ୍ଦିନ୍ରବ ନାଶକ ଅଟେ ।] ୨ । ମଲ୍ଲିକା (ଶବ୍ଦରତ୍ନାବଳୀ)—2. Jasmine. ୩ । ଶ୍ୱେତ କଣ୍ଟକାରୀ (ଦେଖ)—3. Śweta kaṇṭakārī (See) ୪ । ବାକୁଚୀ; ସୋମରାଜୀ—4. Serratula Anthelmentica ୫ । ବିଦାରୀ; ଭୂଇଁକଖାରୁ (ରାଜନିର୍ଘଣ୍ଟ)—5. A medicinal bulbous root; Ipomoea Digitata. ୬ । ଶ୍ୱେତଦୂବା (ରାଜନିର୍ଘଣ୍ଟ)—6. The white doob grass. ୭ । ଚନ୍ଦ୍ରିକା; ଚାଳିଆ (ରାଜନିର୍ଘଣ୍ଟ)—7. Common cress. ୮ । ବୃହତ୍ପୁଷ୍ପିକା ଗୁଳ୍ମ (ରାଜନିର୍ଘଣ୍ଟ)—8. A kind of plant. ୯ । ମଦ୍ୟ (ରାଜନିର୍ଘଣ୍ଟ)—9. Wine. ୧୦ । ପିତ୍ତଳ; ପିତଳ (ରାଜନିର୍ଘଣ୍ଟ)—10 Brass ୧୧ । ଜାମ୍ବୁପାଣୀ; ଉଦରଭକଣ ନାମକ ଗୁଳ୍ମ (ରାଜନିର୍ଘଣ୍ଟ)—11. A plant; Thalictrum Foliolosum. ୧୨ । ଦୋଳଣ; ଦୁରୁଗା ଘାସ; ଦୁବା (ରାଜନିର୍ଘଣ୍ଟ)—12. A kind of grass. ୧୩ । ପର୍ବତ ଜାତ ଅପରାଜିତା (ଜଟାଧର)—13. The clitoris flower growing in the mountain. ୧୪ । ଚନ୍ଦ୍ରିକା; (ଜ୍ୟୋତ୍ସ୍ନା ବୃ. ଶ)—14. Moonlight.

୧୫ । ଶୁକ୍ଳପକ୍ଷ (ବୃ. ଶ)—15 The bright lunar fortnight. ୧୬ । ଅର୍କପୁଷ୍ପୀ (ବୃ. ଶ)—16. Arkapushpi ( See ). ୧୭ । ବଚ୍ଚ ( ବୃ. ଶ )—17. Acorus Calamus; the sweet flag ( root ). ୧୮ । ସିଂହଳୀ ପିପ୍ପଳୀ ( ବୃ. ଶ )—18. A kind of white long pepper. ୧୯ । ଅମ୍ବାଡ଼ା; ଅମ୍ବଡ଼ା (ବୃ. ଶ)—19. Hogplum. ୨୦। ଗୋରୋଚନା (ବୃ. ଶ)—20. A yellow pigment got from dead kine. ୨୧ । ରଜତ; ରୁପା ( ବୃ. ଶ )—21. Silver. ୨୨ । ଶ୍ୱେତପୁନର୍ଣ୍ଣବୀ ( ବୃ. ଶ )—22. The white variety of hogweed. ୨୩ । ଶ୍ୱେତ ପାଟଳ ବୃକ୍ଷ ( ବୃ. ଶ )—23. The white flowered Stereospermum Suaveolens tree. ୨୪ । ଧଳା ଶିମ୍ବ ( ବୃ. )—24. White bean ଗ୍ରାଦେ. ( ବଲଙ୍ଗିର ପାଟଣା ) ବି—ପଖାଳ ଭାତ—Watered boiled rice.

ସିତାଂଶୁ—ସଂ. ବି ( ବହୁବ୍ରୀହି; ସିତ ଅଟେ ଅଂଶୁ ଯାହାର )—୧ । Sitāmsu ଚନ୍ଦ୍ର—1. The moon. ୨ । କର୍ପୂର—2. Camphor.

ସିତାଂଶୁ ତୈଳ—ସଂ. ବି—କର୍ପୂର ତୈଳ ( ସ୍ୱଳ୍ପବର୍ଣ୍ଣ )— Sitāmsu taila Oil of camphor.

ସିତାଂଶୁ ମୁଖ—ସଂ. ବଣ. ପୁଂ ( ବହୁବ୍ରୀହି; ସିତାଂଶୁ ପରି ମୁଖ ଯାହାର ) Sitāmsu mukha —ଚନ୍ଦ୍ରମୁଖ; ଚନ୍ଦ୍ର ପରି ସୁନ୍ଦର ମୁଖବିଶିଷ୍ଟ (ସିତାଂଶୁ ମୁଖୀ—ସ୍ତ୍ରୀ) —Having the face as beautiful as the moon.

ସିତା ଖଣ୍ଡ—ସଂ. ବି—୧ । ମଧୁଜାତ ଶର୍କରା—1. Sugar from Sitā khanda honey. [ ଦ୍ର—ଏଥିର ଗୁଣ— ସ. ପର୍ଯ୍ୟାୟ—ଖଣ୍ଡକ, ମଧୁରତ୍ୱ, ଛର୍ଦ୍ଦି, କଫ, ତୃଷା, କୁଷ୍ଠ, ସିତଜା, ଶର୍କରିକା, ମାଧବୀ, ଶ୍ୱାସ,ହିକ୍କା,ପିତ୍ତଦୋଷ ନାଶକର ।] ମଧୁଶର୍କରା, ମାକ୍ଷିକଶର୍କରା ୨ । ମିଶ୍ରି ( ବୃ. ଶ )— 2. Sugar candy

ସିତାଗ୍ର—ସଂ. ବି (ବହୁବ୍ରୀହି; ସିତ+ଅଗ୍ର)—କଣ୍ଟକ (କ୍ୱଚିତ୍ ବଳୀ )— Sitāgra Thorn.

ସିତାଙ୍କ—ସଂ. ବି—ବାଲୁକାଗର୍ଭ ମତ୍ସ୍ୟ; ବାଲିଗରଡ଼ା ମାଛ (କ୍ୱଚିତ୍ ବଳୀ Sitānka —A species of small scaly fresh-water fish.

ସିତାଙ୍ଗ—ସଂ. ବି—ଶ୍ୱେତ ରୋହିତ, ଧଳା ସୁଅମ କାଠ (ସ୍ୱଳ୍ପବର୍ଣ୍ଣ)— Sitānga A white species of Suāma tree.

ସିତାଜାଜି—ସଂ. ବି—ଶ୍ୱେତ ଜୀରକ ( ସ୍ୱଳ୍ପବର୍ଣ୍ଣ )— Sitājāji The white Jirā.

ସିତାଦ—ସଂ. ବି—୧ । ଗୁଡ଼ ( ସ୍ୱଳ୍ପବର୍ଣ୍ଣ )—1. Molasses Sitādi ୨ । ଖଣ୍ଡ; ଚିନି—2. Whitened sugar; bleached sugar.

ସିତାନନ—ସଂ. ବଣ. ପୁଂ ( ବହୁବ୍ରୀହି )—ଶୁକ୍ଳ ମୁଖଯୁକ୍ତ—Having Sitānana a white face. ସ. ବି—୧ । ଗରୁଡ଼ [ ଶବ୍ଦ [ ସିତାନନା—ସ୍ତ୍ରୀ ] କଳ୍ପଦ୍ରୁମ ]—1. The mythological king of birds. ୨ । ବେଲ ଗଛ [ ବୃ. ଶ ]— 2. Aegle Marmalus ( tree ).

ସିତାପାଙ୍ଗ—ସଂ. ବି ( ବହୁବ୍ରୀହି; ସିତ=ଶୁକ୍ଳବର୍ଣ୍ଣ+ଅପାଙ୍ଗ=ଚକ୍ଷୁର Sitāpānga ପ୍ରାନ୍ତଭାଗ )—ମୟୂର—Peacock.

ସିତା ଫଳ—ଗ୍ରାଦେ ( ଗଞ୍ଜାମ, ପୁରୀ ସଦର )—ଆତ—Custard Sitā phala apple; Anona Squamosa. আতা सीताफल, शरीफा

ସିତା(ତି)ବର—ସଂ. ବି—ସୁନିଷଣ୍ଣକ; ଶାକବିଶେଷ; ସୁନୁସୁନିଆ ଶାଗ— Sitā(ti)bara Marselia Quadrifoliata. ସ ପର୍ଯ୍ୟାୟ—ସୁଚ୍ୟାହ୍ୱ, [ ଦ୍ର—ଏହା ସଂଗ୍ରାହୀ, କଷାୟ, ଲଘୁ, ସୁଚିପତ୍ରକ, ଶ୍ରୀବାରକ, ଶିଖୀ, ତ୍ରିଦୋଷନାଶୀ, ମେଧା ଓ ରୁଚିପ୍ରଦ, ବନ୍ଦ୍ୟ, ସୁସ୍ନିକ, ସୁନିଷଣ୍ଣକ, ରସାୟନ ଓ ନିଦ୍ରାକାରୀ ଅଟେ । କୁରୁଟ, କୁକୁଟ, ସୂଚୀଦଳ, ଏହାର ପତ୍ର ଚତୁର୍ଦଳ ଓ ପତ୍ରର ଶୈତାବର, ମେଧାକୃତ, ଉତ୍ପନ୍ନ ଲୁହ ପରି ସରୁ । ଏହା ଜଳା- ଗ୍ରାହକ, ଚଲୁଷ୍ପତ୍ରୀ, ସିତବରକା ଭୂମିରେ ଜନ୍ମେ । ] সুসনে শাক सुसनी साग

ସିତାବରୀ—ସଂ. ବି—ବାକୁଚୀ; ସୋମରାଜୀ ( ସ୍ୱଳ୍ପବର୍ଣ୍ଣ )— Sitābari Serratula Anthelmintica (herb and seed ).

ସିତାବ୍ଜ—ସଂ. ବି—ଶ୍ୱେତ ପଦ୍ମ— Sitābja White lotus.

ସିତାଭ—ସଂ. ବଣ. ପୁଂ (ସିତ+ଆଭା; ବହୁବ୍ରୀହି)—ଶୁକ୍ଳ ଆଭାଯୁକ୍ତ— Sitābha Having a white lustre. ସ. ବି—କର୍ପୂର— (ସିତାଭା—ସ୍ତ୍ରୀ) Camphor ଚନ୍ଦ୍ର—The moon.

ସିତାଭା—ସ ବି—ତକ୍ରାହ୍ୱାକ୍ଷୁପ (ସ୍ୱଳ୍ପବର୍ଣ୍ଣ) · Sitābhā A kind of medicinal plant.

ସିତା ଭୋଗ—ଦେ. ବି (ସ. ସିତା=ଶୁକ୍ଳ ବା ଚିନି+ଭୋଗ)— Sitā bhoga ୧ । ଚାଉଳ ଅଟା, ମଇଦା, କ୍ଷୀର ଓ ଛେନା ଦ୍ୱାରା सीताभोग ପ୍ରସ୍ତୁତ ପକ୍ୱାନ୍ନ, ମିଷ୍ଟାନ୍ନବିଶେଷ—1. A kind of সিতাভোগ sweetmeat. [ଦ୍ର—ସିତାଭୋଗ ଦେଖିବାକୁ ଧଳା ଭାତପରି । ଗୁଅଳଅଟା, ମଇଦା, କ୍ଷୀରଛେନା ଓ ଘିଅ ଅଳ୍ପଟା ଗୁଡ଼ ବା ସୁଜିକୁ ଏକତ୍ର ଚକଟି ତାକୁ ପିଠାରୁ ପରି ଚିନ୍ନ ଜାଳିବାରୁ ଉଠିବାକେ କଂସ ଉପରେ ବସିଥିବା ବିଅ କରେଇରେ ପାକ ଏହା ତଥ୍ୟାର କରାଯାଏ । ବର୍ତ୍ତମାନର ସିତାଭୋଗ ପ୍ରସିଦ୍ଧ ମିଷ୍ଟାନ୍ନ ଅଟେ । ଅନ୍ତତଃ ଏହା କଟକରେ ଓ ଅନ୍ୟାନ୍ୟ ସ୍ଥାନରେ ପ୍ରସ୍ତୁତ ହେଉଅଛି । ] ୨ । ଏକପ୍ରକାର ସରୁ ଧାନ—2. Name of a species of fine paddy. [ ଦ୍ର—ଏହାର ଚାଉଳ ଖାଇବାକୁ ଭଲ । ]

ସିତାଭ୍ର—ସଂ. ବି—୧ । କର୍ପୂର (କପୂର)—1. Camphor. ୨ ।
Sitābhra ଧଳା ମେଘ (ହ. ଶ)—2. White cloud.
(ସିତାଭ୍ରକ—ଅନ୍ୟରୂପ)

ସିତାମ୍ବର—ସଂ. ବି—୧ । (କର୍ମଧା) ଶୁକ୍ଳ ବସ୍ତ୍ର—1. White
Sitāmbara cloth. ୨ । (ବହୁବ୍ରୀହି) ଜୈନମାନଙ୍କ
ଶ୍ୱେତାମ୍ବର ସମ୍ପ୍ରଦାୟ—2. A sect of the Jainas.
ସଂ. ବିଣ. ପୁଂ—ଶୁକ୍ଳ ବସ୍ତ୍ର ପରିଧାନକାରୀ (ବ୍ୟକ୍ତି)—
[ସିତାମ୍ବରା—ସ୍ତ୍ରୀ. ବିଣ] Wearing white cloth.

ସିତାମ୍ଭୋଜ—ସଂ. ବି (କର୍ମଧା, ସିତ + ଅମ୍ଭୋଜ)—ଶ୍ୱେତପଦ୍ମ—
Sitāmbhoja White lotus.

ସିତାର(ରା)—ବୈଦେ. ବି [ଫା. ସେତାର୍, ସିତାର୍ (ସେ, ସି=
Sitāra(rā) ତିନି + ତାର); ବୋଧହୁଏ ପୂର୍ବେ ଏଥିରେ ୩ଟି
सेतार ତାର ଥିଲା; ହି. ହିତଲୀ]—ଲାଉତୁମ୍ବୀ ଲାଗିଥିବା ଏବଂ
सितार ଲୁହାର ୧ ଗୋଟି ଓ ପିତଳର ୪ଟି ବା ୬ଟି, ଏପରି
ମୋଟରେ ୫ଟି ବା ୭ଟି ତାରଯୁକ୍ତ ବାଦ୍ୟଯନ୍ତ୍ର ବିଶେଷ—
Guitar [ଦ୍ର—ଲାଉ ତୁମ୍ବୀର ପାତ୍ରାକାର ଅର୍ଦ୍ଧାଂଶ
ଉପରେ ପଟା ଲାଗି କରି ତହିଁରେ ଗୋଟିଏ ପୋଲା
ଦଣ୍ଡା ଲଗାଯାଏ; ସେହି ଦଣ୍ଡାର ଏକ ମୁଣ୍ଡରେ କଣାମାନ
କରି ସେ କଣାମାନଙ୍କରେ କାଠର ଖିଲମାନ
ପୋତାଯାଏ । ତୁମ୍ବୀର ଯେଉଁ ମୁଣ୍ଡରେ ଦଣ୍ଡ ଲାଗିଥାଏ
ତହିଁର ବିପରୀତ ମୁଣ୍ଡରେ ଗୋଟିଏ ଖିଲମାରି ସେ ଖିଲରେ
ତାରଗୁଡ଼ିକର ଗୋଟିଏ ମୁଣ୍ଡ ବନ୍ଧାଯାଏ ଓ ସେ
ତାରମାନଙ୍କୁ ଦଣ୍ଡର ଉପରେ ଲମ୍ବ ଭାବରେ ନେଇ
ଦଣ୍ଡର ଅନ୍ୟ ମୁଣ୍ଡର ଛିଦ୍ରମାନଙ୍କରେ ପୋତାଥିବା ଖିଲ-
ମାନଙ୍କ ଦେହରେ ବାନ୍ଧିବାକୁ ହୁଏ ଓ ଉକ୍ତ ଖିଲମାନଙ୍କ
ଦ୍ୱାରା ଉକ୍ତ ତାରମାନଙ୍କୁ ଭିଡ଼ାଯାଏ ବା ଢ଼ିଲା କରାଯାଏ ।
ଦଣ୍ଡର ଅଡ଼ ବାଗରେ ଧାତୁର ଗୁଡ଼ିଏ ପରଦା ବା ଘାଟ
ବନ୍ଧାଯାଏ । ଡାହାଣ ହାତର ତର୍ଜନୀ ଅଙ୍ଗୁଠି ଦ୍ୱାରା ତାର-
ମାନଙ୍କୁ ଧ୍ୱନିତ କରାଯାଏ ଓ ବାଁଆ ହାତ ଦ୍ୱାରା ଦଣ୍ଡକୁ
ମୁଠାଇ ଧରି ବାଁଆ ହାତର ତର୍ଜନୀ ଅଙ୍ଗୁଠି ଦ୍ୱାରା ତାରକୁ ଉକ୍ତ
ପରଦା ବା ଘାଟ (ସଂ. ଘଟ୍ଟ)ମାନଙ୍କ ଉପରେ ଚପିବାକୁ ଓ
ଛାଡ଼ିଦେବାକୁ ହୁଏ ଓ ପରଦାମାନଙ୍କ ଉପରେ ବାଁଆ ହାତର
ତର୍ଜନୀ ଅଙ୍ଗୁଠିକୁ ଉପରକୁ ବା ତଳଆଡ଼କୁ ଚଳାଇଲେ ଭିନ୍ନ
ଭିନ୍ନ ସ୍ୱର ବାହାରେ । ଲୁହା ତାର ଦ୍ୱାରା ନିର୍ମିତ
'ମିଜରାବ୍'କୁ ଡାହାଣ ହାତର ତର୍ଜନୀ ଅଙ୍ଗୁଠିରେ ଟୋପିପରି
ପିନ୍ଧି ଏହି ତାରମାନଙ୍କୁ ବଜାଇବାକୁ ହୁଏ ।

ତଳର ଗୋଲାକାର ଅଧଫାଳକୁ ତୁମ୍ବ, ତୁମ୍ବା ବା ତୁମ୍ବୀ
(ସଂ. ତୁମ୍ବ) କୁହାଯାଏ । ତୁମ୍ବ ଉପରେ ଲାଗି ହୋଇ
ଥିବା ପତଳା କାଠର ପଟାକୁ 'ତବଲି' କହନ୍ତି । ତବଲି
ଓ ତୁମ୍ବୀର ଗୋଟିଏ ଧାରରେ ଗୋଟିଏ ଖିଲ (ପଟ୍ଟି)ରେ
ତାରମାନଙ୍କୁ ଗଣ୍ଠାଇ ଦେଇ ତବଲିର କେନ୍ଦ୍ରରେ ତୁଇଟି ଯୋଡ଼
ଥିବା ହାଡ଼ର ବା ହାତୀଦାନ୍ତର ଯୋଡ଼ଥ (ସଉଅର,
ଚଉକୀ, ସବାର) ର ଉପର ଦେଇ ତାରମାନଙ୍କୁ ଟାଣି କରି
ଦଣ୍ଡର ଶେଷ ଭାଗରେ ଅଡ଼ ବାଗରେ ସଂଲଗ୍ନ ୨ଟି ହାଡ଼
ବା ହାତୀଦାନ୍ତର ମଗରମୁହାଁ ପିଢ଼ା [ଅଡ଼ ବା ସରସ୍ୱତୀ;
ସଂ. ଅଳ] ଉପର ବାଟେ ନେଇ ତାରମାନଙ୍କୁ ଦଣ୍ଡାର
ମୁଣ୍ଡରେ ଥିବା କାଠ ଖିଲ [କାନ; ସଂ. କର୍ଣ୍ଣ] ରେ
ଗୁଡ଼ାଇବାକୁ ହୁଏ ।

ପ୍ରଥମ ତାର ଇସ୍ପାତର । ଏହାକୁ 'ବାଜ୍' 'ପକ୍କା'
ବା 'ନାୟକୀ' ତାର କୁହାଯାଏ । ଏହି ତାରକୁ ଡାହାଣ
ହାତରେ ମିଜରାବ୍ ଦ୍ୱାରା ବଜାଇ ବାଁଆ ହାତର ଅଙ୍ଗୁଠି-
ମାନଙ୍କ ଦ୍ୱାରା ଘାଟ ବା ପରଦା ଉପରେ ଘଷି ସ୍ୱରକୁ
ଉପଲବ୍ଧି କରାଯାଏ । ଅନ୍ୟ ପିତଳ ତାରଗୁଡ଼ିକରେ
କେବଳ ମିଜରାବ୍‌କୁ ଆଘାତ କରିବାକୁ ହୁଏ । ୨ୟ ଓ
୩ୟ ତାରକୁ 'ଖରଜ'ର ଯୋଡ଼ି, ୪ର୍ଥ ଲୁହାର ତାରକୁ
'ପଞ୍ଚମ' ଓ ୫ମ ତାରକୁ 'ଖରଜ' କୁହାଯାଏ । ଏଥି ୫ଟି
ତାର ବ୍ୟତୀତ ୨ଟି ଛୋଟ ଲୁହା ତାରକୁ 'ତରଫ୍ ତାର'
ବା 'ଚିକାରୀ' କୁହାଯାଏ । 'ନାୟକୀ' ତାରର ସ୍ୱରକୁ
ଉଚ୍ଚନୀଚ କରିବା ପାଇଁ ତାରର ମୁଣ୍ଡ ଅର୍ଥାତ୍ ସବାର ଓ
ପଟ୍ଟିର ମଝିରେ ଥିବା ଅଂଶରେ କାଚର ମାଳି ବା ଗୋଲ
ବା ଛୋଟ କଉଡ଼ି [ମାନୁକା] ଲଗା ଯାଇଥାଏ ।

ପୂର୍ବେ ଓଡ଼ିଶା ଗଡ଼ଜାତର କେନ୍ଦୁଝରରେ ସିତାରର
ଉତ୍କୃଷ୍ଟ ତାର ପ୍ରସ୍ତୁତ ହେଉଥିଲା । ବର୍ତ୍ତମାନ ଯୁକ୍ତପ୍ରଦେଶର
ବଣାରସରେ ସିତାର ପାଇଁ ଉତ୍କୃଷ୍ଟ ତାର ଅଛି ।]

ସିତାରୀ—ଦେ. ବି—ସିତାର ବଜାଇବାରେ ଦକ୍ଷ ବ୍ୟକ୍ତି—
Sitārī A person who can play on guitar.
[ସିତାରବାଜ୍, ସିତାରିଆ—ଅନ୍ୟରୂପ]
सेतारी सितारी, सितारबाज

ସିତାର୍ଜ(ର୍ଜ୍ଜ)କ—ସଂ. ବି—ଶ୍ୱେତ ତୁଳସୀ—The white variety
Sitārja(rjja)ka of Basil plant. [ଦ୍ର—ଏହା କଟୁ,
ସଂ. ପର୍ଯ୍ୟାୟ—ବୈକୁଣ୍ଠ, କଠଞ୍ଜର, କୁଠେରକ, ଜମ୍ବୀର, ଗନ୍ଧକାଣ୍ଡ, ସୁମୁଖ, କଟୁପତ୍ରକ । } ଉଷ୍ଣ, ଜ୍ୱରନାଶକ ଓ ନେତ୍ର ରୋଗର ନାଶକ, ରୁଚ୍ୟ ଓ ସୁଗନ୍ଧବର୍ଦ୍ଧକ ଅଟେ ।]
श्वेत तुलसी श्वेत आजबला
ମ. ପାଂଢ଼ୁରୀ ଅଳବଳ

ସିତାଳକ—ସଂ. ବି—ଶ୍ୱେତ ଅର୍କ (ଧଳଅର୍କ)—
Sitālaka The white variety of Calotropis
Gigantea plant.

ସିତାଲତା—ସଂ. ବି—ଶ୍ୱେତଦୂବ (ରତ୍ନମାଳା)—
Sitālatā The white Doob grass.

ସିତାଲିକା—ସଂ. ବି—ଶୁକ୍ତି; ସିପ (ହ. ଚ)
Sitālikā Oyster shell.

ସିତାଶ୍ମ—ସଂ. ବି (ସିତ + ଅଶ୍ମନ୍—ପଥର; କର୍ମ. ଧା)—ଚନ୍ଦ୍ରକାନ୍ତ
Sitāsma ମଣି—A gem; the moon-stone.

ସିତାଶ୍ୱ—ସଂ. ବି—୧ । ( କର୍ମଧା ) ଧଳା ଘୋଡ଼ା—1. White horse. ୨ । ( ବହୁବ୍ରୀହି ) ଅର୍ଜୁନ—2. The 3rd Pāṇḍaba brother. ୩ । (ବହୁବ୍ରୀହି) ଚନ୍ଦ୍ରମା (ହ୍ଲ. ଶ)—3. Moon.
Sitāśwa

ସିତାସିତ—ସଂ. ବିଣ ( ସିତ+ଅସିତ )—ଶୁକ୍ଳ ଓ କୃଷ୍ଣ—White and black. ସଂ. ବି—୧ । ବଳରାମ; ବଳଦେବ—1. The brother of Srikṛūshṇa. ୨ । ( ଜ୍ୟୋତିଷ ) ଶୁକ୍ର ଗ୍ରହ ସହିତ ଶନି ଗ୍ରହ—2. The planet Venus with Saturn. ୩ । ଗଙ୍ଗା ଓ ଯମୁନା ( ହ୍ଲ. ଶ )—3. The Ganges and the Jamuna rivers.
Sitāsita

ସିତାହ୍ୱୟ—ସଂ. ବି—୧ । ସଜନା ( ରାଜନିର୍ଘଣ୍ଟ )—1. The horse radish. ୨ । ଶ୍ୱେତ ରୋହିତ; ଧଳା ମୁଅନ ଗଛ (ରାଜନିର୍ଘଣ୍ଟ)—2. A timber tree. ୩ । ଧଳା ସଜନା (ହ୍ଲ. ଶ) 3. The white flowered Moringa. ୪ । ଧଳା ତୁଳସୀ (ହ୍ଲ. ଶ)—4. The white Basil plant.
Sitāhwaya

ସିତି—ସଂ. ବିଣ ( ଷି ଧାତୁ=ବନ୍ଧନ କରିବା+କର୍ତ୍ତୃ. ତି; ଅନ୍ୟରୂପ ଶିତି )—୧ । ଶୁକ୍ଳ ( ରମାନାଥ )—1. White. ୨ । କୃଷ୍ଣ; କଳା [ ରମାନାଥ ]—2. Black. ୩ । ନୀଳ—3. Blue.
Siti

ସିତିକଣ୍ଠ—ସଂ. ବି—ଶିତିକଣ୍ଠ; ମହାଦେବ [ଶବ୍ଦକଳ୍ପଦ୍ରୁମ]—God Śiba.
Sitikaṇṭha

ସିତକାର—ଗ୍ରା. ବି [ ସଂ. ସୀତ୍କାର ]—ସୀତ୍କାର [ ଦେଖ ]—Sit-kāra (See). [ ଉ—କବେ ଉପେନ୍ଦ୍ର ସିତକାରେ କହେ ତୁମ୍ଭ ପଣ ମୁଖେ ବୋଲେ ସାଧ ତୋ ଏ ନା—ଭଞ୍ଜ. ଲବଣ୍ୟବତୀ ।]
Sitikāra
सीत्कार सिसकारी

ସିତିବାର(ବାରକ)—ସଂ. ବି—ସିତାବର [ଦେଖ]
Sitibāra(bāraka) Sitābara (See)

ସିତିବାସ—ସଂ. ବି—ବଳଦେବ [ଶବ୍ଦକଳ୍ପଦ୍ରୁମ]—Lord Baladeba.
Sitibāsa

ସିତିମା—ସଂ. ବି [ସିତି+ଭାବେ ଇମନ୍; ୧ମା. ୧ବ]—୧ । ଶୁକ୍ଳତା—1. Whiteness. ୨ । କୃଷ୍ଣତା—2. Blackness.
Sitimā

ସିତିଲିଆ—ପ୍ରାଦେ [ ବାଲିଙ୍ଗିରପାଟଣା ] ବି—ତୁଣ୍ଡ ଘାଅ—Eruptions or sores in the mouth or on the lips.
Sitiliā

ସିତିଲି ପଶିବା—ପ୍ରାଦେ [ ବାଲିଙ୍ଗିରପାଟଣା ] କ୍ରି—ସନ୍ତେଲିବା; ଆର୍ଦ୍ର ହେବା—To be damp.
Sitili paśibā

ସିତୁ—ଦେ. ବି (ନାମ) ( ଅଦରାର୍ଥକ )—'ସୀତାରାମ'ର ଡାକନାମ—The name for calling 'sitārāma'
Situ
(ସିତୁଅ— ଅନାଦରାର୍ଥ ରୂପ)

ସିତେକ୍ଷୁ—ସଂ. ବି (ସିତ+ଇକ୍ଷୁ)—ଶ୍ୱେତେକ୍ଷୁ; ଧଳା ଆଖୁ—White sugarcane.
Sitekshu

ସିତେତର—ସଂ. ବି (୫ମୀ ତତ୍; ସିତ+ଇତର) ୧ । ଶ୍ୟାମଶାଳ; କୋଳଥ—1. A cereal; horse-gram. ୨ । ଶୁକ୍ଳେତର ବର୍ଣ୍ଣ—2. Any colour other than white. ସଂ. ବିଣ—୧ । କୃଷ୍ଣବର୍ଣ୍ଣଯୁକ୍ତ; କଳା—1. Black. ୨ । ନୀଳ (ହ୍ଲ. ଶ); ନେଳି—2. Blue.
Sitetara

ସିତେତର ଗତି—ସଂ. ବି—କୃଷ୍ଣବର୍ତ୍ମା; ଅଗ୍ନି (ହଳାୟୁଧ)—Fire.
Sitetara gati

ସିତୋଦର—ସଂ. ବି (ବହୁବ୍ରୀହି; ସିତ=ଶ୍ୱେତ+ଉଦର ଯାହାର)—କୁବେର ( ହେମଚନ୍ଦ୍ର )—The God of wealth.
Sitodara

ସିତୋଦ୍ଭବ—ସଂ. ବି—ଶ୍ୱେତ ଚନ୍ଦନ ( ଶବ୍ଦରତ୍ନାବଳୀ )—The white sandal. ସଂ. ବିଣ—ଶର୍କରାରୁ ଜାତ—Produced from sugar.
Sitodbhaba

ସିତୋପଳ—ସଂ ବି (ସିତ+ଉପଳ)—୧ । ଖଡ଼ି; ଖଡ଼ (ତ୍ରିକାଣ୍ଡଶେଷ)—1. Chalk. ୨ । ସ୍ଫଟିକ (ରାଜନିର୍ଘଣ୍ଟ)—2. Quartz.
Sitopala

ସିତୋପଳା—ସଂ ବି—୧ । ଶର୍କରା ( ହେମଚନ୍ଦ୍ର )—1. Sugar. ୨ । ମିଶ୍ରି (ହ୍ଲ. ଶ)—2. Sugarcandy.
Sitopalā

ସିଦ(ଦା,ଦି,ଦୁ,ଧ,ଧା,ଧି,ଧୁ)—ଗ୍ରା. ବି ( ନାମ )—ସିଦ୍ଧନାଥ ବା ସିଦ୍ଧେଶ୍ୱରର ଡାକନାମ-[ସିଦ(ଧି)ଆ, ସିଦେ(ଧ)ଇ—ଅନ୍ୟରୂପ]—Names for calling Siddheśwara.
Sida(dā,di,du,dha,dhā,dhi,dhu)

ସିଦ(ଧ)ଶର—ଗ୍ରା. ବି—ସିଦ୍ଧେଶ୍ୱରର ଡାକନାମ—Name for calling Sidheśwara.
Sida(dha)śara

ସିଦା(ଧା)—ଦେ. ବି (ସଂ ସିଦ୍ଧ; ଯାହା ସିଦ୍ଧ କରାଯିବ)—ଚୌଣସି ଅଭ୍ୟାଗତ ବ୍ୟକ୍ତିଙ୍କ ଭୋଜନ ନିମିତ୍ତ ତାଙ୍କ ନିକଟକୁ ପ୍ରେରିତ ଡାଲି ଚାଉଳ ଆଦି ରନ୍ଧନ ସାମଗ୍ରୀର ସମ୍ଭାର; ଅନ୍ନାଦି; ଅସିଦ୍ଧ ଖାଦ୍ୟ-A tray of victuals; uncooked victuals sent to a guest.
Sidā(dhā)
सिधा सिधा
सिधे सीधा
ଦେ. ବିଣ (ସଂ ଶୁଦ୍ଧ)—୧ । ସଳଖ—1. Straight. ୨ । ଅମାୟିକ; ସରଳ; ନିଷ୍କପଟ—2. Straight; simple. ୩ । ପ୍ରହାର ବା ଦଣ୍ଡାଦ୍ୱାରା ଶାସିତ—3. Brought under control.

ସିଦା(ଦେ)ଇବା—ଦେ. କ୍ରି—ସିଧାଇବା (ଦେଖ)
Sidā(de)ibā Sidhāibā (See)

ସିଦା ସଞ୍ଚା—ଦେ. ବି (ଏକାର୍ଥକ ଶବ୍ଦଦ୍ୱୟ)—ସିଦା [ଦେଖ]
Sidā sañchā Sidā (See)
सिधापत्र सीधासामग्री

**ସିଦ୍ଧା ସାମଗ୍ରୀ**—ଦେ. ବି—ରନ୍ଧାଯିବାପାଇଁ ଅଭ୍ୟାଗତଙ୍କୁ ଦିଆଯିବା
**Sidā sāmagri** ଦ୍ରବ୍ୟମାନ—Uncooked victuals
সিধাসামগ্রী **सिधासामग्री** sent to a guest.

**ସିଦ୍ଧି**—ଗ୍ରା. ବି (ସଂ ସିଦ୍ଧି)—ସିଦ୍ଧି (ଦେଖ)
**Sidi** Siddhi (See)
সিধি **सिधी**

**ସିଦୋ**—ପ୍ରାଦେ (ବାଲେଶ୍ୱରପାଟଣା) ବି—ସୁଯୋଗ; ସୁବିଧା—
**Sido** Opportunity; chance.

**ସିଦ୍ଧ**—ସଂ ବିଣ [ସିଧ୍ ଧାତୁ+କର୍ମ କ୍ତ]—୧ । ଅଗ୍ନି ଉପରେ ପାକ
**Siddha** କରାଯାଇଥିବା; ପକ୍ୱ; ସିଝାଯାଇଥିବା—
1. Boiled over fire. ୨। ରନ୍ଧା ଯାଇଥିବା; ପକ୍ୱ—
2. Cooked. ୩ । ପ୍ରସିଦ୍ଧ—3. Famous; celebrated. (ଉ—ବୋଧହୁଏ ଏ ସିଦ୍ଧ; ଥିଲେବଥିଲେ ସିଦ୍ଧ, ବୋଧ ଦେଉଣ ଗତ ସେ—ଉଦ୍ଧ ବୈଦେହୀଶବିଳାସ ।) ୪ । ସମାହୃତ; ନିଷ୍ପନ୍ନ; ସମ୍ପାଦିତ—4. Accomplished; effected. ୫ । ପ୍ରତିପାଦିତ; ତର୍କ ବା ପ୍ରମାଣାଦି ଦ୍ୱାରା ନିଶ୍ଚିତ—5. Established by argument, reasoning or proof. ୬ । ପ୍ରମାଣୀକୃତ—6. Proved; demonstrated. ୭ । ଫଳିତ; ସଫଳ; ଉପଲବ୍ଧ—7. Solved; fulfilled. ୮ । ନିତ୍ୟ—8. Eternal; permanent. ୯ । ମୁକ୍ତ—9. Released. ୧୦ । ସିଦ୍ଧିବିଶିଷ୍ଟ—10. Blessed with success; successful. ୧୧ । ମନ୍ତ୍ରସିଦ୍ଧିଯୁକ୍ତ—11. Accomplished in mystic formulae. ୧୨ । ପରିଶୋଧିତ—12. Refined. ୧୩ । ନିପୁଣ; ପାରଦର୍ଶୀ—13. Expert; skilled. ୧୪ । ଯୋଗ ସାଧନରେ ବା ତପସ୍ୟାରେ ସିଦ୍ଧିପ୍ରାପ୍ତ—14. One who has attained success in Joga or penance. ୧୫ । ଲକ୍ଷ୍ୟରେ ଉପସ୍ଥିତ—15. Arrived at one's aim. ୧୬ । ମୋକ୍ଷର ଅଧିକାରୀ (ହୁ. ଶ)—16. Deserving beatitude. ୧୭ । ଫଳରେ ଘଟିଥିବା—17. Come to pass; which has borne fruit. ୧୮ । ନିର୍ଣ୍ଣୀତ—18. Settled. ୧୯ । ଶୋଧିତ (ଋଣ) (ହୁ. ଶ)—19. Repaid; liquidated; cleared off. ୨୦ । ସ୍ୱଭାବ—20. Inherent. [ ଯଥା—ସ୍ୱଭାବସିଦ୍ଧ ଗୁଣ । ] ସଂ. ବି—୧ । ସୈନ୍ଧବ ଲବଣ ( ରାଜନିର୍ଘଣ୍ଟ )—1. A kind of salt. ୨ । କୃଷ୍ଣ ଧୂସ୍ତୁର ( ରାଜନିର୍ଘଣ୍ଟ )—2. The black variety of Datura plant. ୩ । ଗୁଡ଼ ( ରାଜନିର୍ଘଣ୍ଟ )—3. Molasses. ୪ । ବ୍ୟବହାର ( ଶବ୍ଦରତ୍ନାବଳୀ ); ମକଦ୍ଦମା (ହୁ. ଶ)—4. Litigation. ୫ । ଦେବ-ଯୋନିବିଶେଷ—5. A class of aerial beings; a class of Demi-gods. [ ଦ୍ର—ସିଦ୍ଧମାନଙ୍କ ନିବାସ ସ୍ଥାନ ଭୁବର୍ଲୋକ ଓ କାହା କାହା ମତରେ ହିମାଳୟ ଅଟେ । ବାୟୁପୁରାଣ ମତରେ ଏମାନଙ୍କ ସଂଖ୍ୟା ୮୮ ହଜାର । ଏମାନେ ସୂର୍ଯ୍ୟଙ୍କ ଉତ୍ତର ଓ ସପ୍ତର୍ଷିଙ୍କ ଦକ୍ଷିଣ ଅନ୍ତରୀକ୍ଷରେ ବାସ କରନ୍ତି । ଏମାନେ ଏକ କଳ୍ପ ଜୀବିତ ରହନ୍ତି ( ହୁ. ଶ ) । ଏମାନେ ଅଣିମାଦି ଐଶ୍ୱର୍ଯ୍ୟ ସମ୍ପନ୍ନ । ବ୍ୟାସଦେବ ଏହି ଶ୍ରେଣୀର ଅନ୍ତର୍ଗତ । ] ୬ । ଯୋଗସିଦ୍ଧ ବା ତପଃସିଦ୍ଧି ପ୍ରାପ୍ତ ମୁନି—6. A sage who has attained success in mystic exercises or in Joga and penance. [ଉ—ବୋଧ ହୁଏ ଏ ସିଦ୍ଧ ଧରି କଥିଲେ ସିଦ୍ଧ—ଉଦ୍ଧ. ବୈଦେହୀଶବିଳାସ । ] ୭ । ( ଜ୍ୟୋତିଷ ) ବିଷ୍କୁମ୍ଭାଦି ସପ୍ତବିଂଶତି ଯୋଗାନ୍ତର୍ଗତ ଏକବିଂଶ ଯୋଗ—7. (Astrology ) One of the 27 astrological conjunction. [ଦ୍ର—ଏହା ଶୁଭ ଯୋଗ, ଏଥିରେ ଜାତ ହେବା ବ୍ୟକ୍ତି ଜଟେଶ୍ୱର, ସଙ୍କଳାନ୍ବିତ, ଗୌର, ଧନାଢ୍ୟ, ସତ୍ୟବାଦୀ ଓ ଭୋଗୀ ହୁଏ । ] ୮ । କୃଷ୍ଣ ସିନ୍ଦୁବାର ( ହୁ. ଶ )—8. The black variety of Sindubāra. ୯ । ଧଳା ରୋହିତ ( ହୁ. ଶ )—9. Weite Ryb. ୧୦ । ଅର୍ହତ୍; ଜିନ ( ହୁ. ଶ )—10. Jaina saint. ଦେ. ବି—ସିଦ୍ଧନାଥ ବା ସିଦ୍ଧେଶ୍ୱରଙ୍କ ଡାକ ନାମ—Name for calling Siddhanātha or Siddheśwara.

**ସିଦ୍ଧ ଅତିବଡ଼ ଜଗନ୍ନାଥ ଦାସ ଗୋସ୍ୱାମୀ**—
**Siddha ati barda jagannātha dāsa goswāmi**
[ ଦ୍ର—ସିଦ୍ଧ ଯୋଗୀ ଶ୍ରୀ ଅତିବଡ଼ ଜଗନ୍ନାଥ ଦାସ ଗୋସ୍ୱାମୀ ପୁରୀର ବଡ଼ ଓଡ଼ିଆ ମଠର ପ୍ରତିଷ୍ଠାତା । ଉତ୍କଳର ପୁଣ୍ୟଶ୍ଳୋକ ମହାରାଜ କପିଳେନ୍ଦ୍ର ଦେବଙ୍କ ପ୍ରତିଷ୍ଠିତ କପିଳେଶ୍ୱରପୁର ଶାସନ ଏହି ମହାତ୍ମାଙ୍କର ଜନ୍ମସ୍ଥାନ । ଏହି ଶାସନଟି ପୁରୁଷୋତ୍ତମ କ୍ଷେତ୍ରର ପଶ୍ଚିମରେ ପ୍ରାୟ ଦଶ କୋଶ ଦୂରରେ ଅବସ୍ଥିତ । ୧୪୯୦ ଖ୍ରୀଷ୍ଟାବ୍ଦ ଭାଦ୍ରମାସ ଶୁକ୍ଳପକ୍ଷ ଅଷ୍ଟମୀ ଅନୁରାଧା ନକ୍ଷତ୍ର ବୁଧବାର ଦିନ ମଧ୍ୟାହ୍ନ ସମୟରେ ଏ ମହାତ୍ମା ଏ ଗ୍ରାମରେ ଅବତୀର୍ଣ୍ଣ ହୋଇଥିଲେ । ଯେଉଁ କ୍ଷଣରେ ବୃଷଭାନୁ ନନ୍ଦିନୀ ରାଧାଦେବୀଙ୍କର ଜନ୍ମ ବୋଲି ପୁରାଣରେ ବର୍ଣ୍ଣିତ ହୋଇଅଛି, ଠିକ୍ ସେହିକ୍ଷଣରେ ଜଗନ୍ନାଥ ଦାସ ଜନ୍ମଗ୍ରହଣ କରିଥିବାରୁ ତାଙ୍କୁ ରାଧାଙ୍କର ଅଂଶାବତାର ବୋଲି ଲୋକେ ବିଶ୍ୱାସ କରନ୍ତି । ତାଙ୍କ ପିତାଙ୍କ ନାମ ଭଗବାନ ଦାସ ଓ ମାତାଙ୍କ ନାମ ପଦ୍ମାବତୀ । ଭଗବାନ ଦାସ ମହାରାଜା ପୁରୁଷୋତ୍ତମ ଦେବଙ୍କର ପୌରାଣିକ ଥିଲେ । ପଦ୍ମାବତୀ ବଡ଼ ଧର୍ମପରାୟଣା, ସୁଶୀଳା ଓ ପତିବ୍ରତା ଥିଲେ । ଶୋଣୀ ଦେବ-

nzee; Anthropithems Troglodites. [ଦ୍ର—ଅନ୍ୟ ମାଙ୍କଡ଼ଙ୍କ ଅପେକ୍ଷା ଏ ମାଙ୍କଡ଼ ମନୁଷ୍ୟ ଆକୃତିର ଅଧିକତର ନିକଟବର୍ତ୍ତୀ । ଏହା ଉଚ୍ଚତାରେ ୪ ଫୁଟ ପର୍ଯ୍ୟନ୍ତ ବଢ଼େ । 'ମାଙ୍କଡ଼' ଶବ୍ଦ ତଳେ ଟିପ୍ପଣୀ ଦେଖ । ] ୨ । [ ଲକ୍ଷଣାର୍ଥ ] ସିମ୍ପାଞ୍ଜି ପରି ଅସୁନ୍ଦର ମନୁଷ୍ୟ—2. ( figurative ) A person of hideous appearance and proportions like the chimpanzee.

ଶିମ୍ପିବା—ଦେ. କ୍ରି—ସିପି ଯିବା; ସେମିତି ଯିବା—
Simpibā To become shrunken.
সিটিয়েযাওয়া, সিটিপিটী चिपटाना [ସିମ୍ପିଯିବା—ଅନ୍ୟରୂପ)

ଶିମ୍ବ(ମ)—ଦେ· ବି (ସଂ· ଶିମ୍ବୀ)—ଶିମ୍ବ (ଦେଖ)
Simba(ma) Simbā (See)

ଶିମ୍ବ(ମ) ଖାଇ—ଗ୍ରାଦେ (ବୌଦ୍ଧ; ସମ୍ବଲପୁର; ଗଡ଼ଜାତ) ବି—
Simba(ma) khāi ନବାନ୍ନ ଉତ୍ସବ; ବର୍ଷର ପ୍ରଥମେ ଅମଳ ହେବା ଶସ୍ୟର ଚୂଡ଼ା, ଅନ୍ନ, କ୍ଷୀର ଆଦି ଦେବତାଙ୍କୁ ନୈବେଦ୍ୟ କରାଯାଇ ଭୋଜନ କରାଯିବାରୂପ ବାର୍ଷିକ ଉତ୍ସବ—The annual feast of taking the rice of the grains garnered first for the year. [ଦ୍ର—ଏ ଉତ୍ସବର ଅନ୍ୟ ନାମ ନୂଆଖିଆ । ଏ ଦିନ ଗ୍ରାମର ଉପକଣ୍ଠରେ ଥିବା ଗ୍ରାମଦେବତାଙ୍କ ଅସ୍ଥାନରେ ବା ଶମ୍ବଲ ଠାରେ ନୂଆ ଧାନର ଅନ୍ନ, ଖେଚୁଡ଼ି, କ୍ଷୀରି, ଚୂଡ଼ା ଆଦି ଭୋଗ ଦିଆଯାଏ ଓ ତତ୍ପରେ ଗ୍ରାମବାସୀଙ୍କ ଘରେ ନୈବେଦ୍ୟ ଓ ନୂଆଖିଆ ଉତ୍ସବ ହୁଏ ।]

ଶିମ୍ବା—ସଂ, ବି (ଅନ୍ୟରୂପ ଶିମ୍ବା)—୧ । ଶମୀଧାନ୍ୟ (ଦ୍ୱିରୂପ କୋଷ)—
Simbā 1. Leguminous grain. ୨ । ଶିମ୍ବ (ଦ୍ୱିରୂପ କୋଷ)—2. Bean.

ଶିମ୍ବି—ସଂ. ବି (ଅନ୍ୟରୂପ ଶିମ୍ବି)—୧ । ଶିମ୍ବ (ଦ୍ୱିରୂପ କୋଷ)—
Simbi 1. Bean. ୨ । ନଖୀ ନାମକ ଗନ୍ଧଦ୍ରବ୍ୟ (ଶବ୍ଦକଳ୍ପଦ୍ରୁମ)—2. A scented herb.

ଶିମ୍ବିଜା—ସଂ. ବି (ଅନ୍ୟରୂପ ଶିମ୍ବିଜା)—ଶମୀଧାନ୍ୟ; ଶିମ୍ବିଜ (ଗୁଣ ପ୍ରକାଶ)—Leguminous grains.
Simbijā

ଶିମ୍ବୀ—ସଂ. ବି (ଅନ୍ୟରୂପ ଶିମ୍ବୀ) —୧ । ଶିମ୍ବ—1. Bean. ୨ । ଶମୀ
Simbī ଧାନ୍ୟ—2. Leguminous pods or grains. ୩ । କଣ୍ଡାରୀ (ଶବ୍ଦକଳ୍ପଦ୍ରୁମ); ବରଗୁଡ଼ି—
3. Vigna Catjong; Dolichus Synesis.

ସିଜ୍(ଜେ)ବାର୍—ଦେ. ବି—ଗୟାର ପଣ୍ଡାମାନଙ୍କର ବଂଶୋପାଧି
Sij(je)bār ବିଶେଷ—Family title of some Pandās of Gaya.
সিজবার্ सिजबार
[ସିଜେଭ୍‌ଥର୍ —ଅନ୍ୟରୂପ]

ସିୟାଳ(ଳି) (ଇତ୍ୟାଦି) —ଦେ· ବି—ଶିଆଳ ଇତ୍ୟାଦି (ଦେଖ)
Siyāla(li) (etc) Siāla etc. (See)

ସିୟୁଣି—ଗ୍ରାଦେ (ଗଞ୍ଜାମ) ବି—ଟୋକେଇ (ଘୋଷାଡ଼ାଅ ନାମ)—
Siyuṇi Basket.

ସିର୍—ଗ୍ରାଦେ· (ସମ୍ବଲପୁର) ବି.—ମାଫିଦାର ବା ଲଖରାଜଦାରଙ୍କ ନିଜର
Sir ଘରୁ ଜମି—A permanent home farm of a proprietor or Maphidār or Lakharājadār.

ସିର୍‌କସ୍ତ—ବୈଦେ. ବି (ଫା. ଶିକସ୍ତ)—ସିକସ୍ତ—(ଦେଖ)
Sir-kast Sikast (see)

ସିର୍‌କା—ବୈଦେ. ବି (ଫା)—ସିର୍କା; ଗୁଡ଼ ଓ ଅନ୍ୟ ମିଷ୍ଟ ରସ
Sir-kā ସଢ଼ାଇଲେ ଯେଉଁ ଅମ୍ଳ ଉତ୍ପନ୍ନ ହୁଏ ; ମଦର କାଞ୍ଜି—
সির্‌কা Vinegar. [ଦ୍ର—ଅଙ୍ଗୁ, ଅଙ୍ଗୁର, ଜାମୁ ଆଦିର ରସକୁ
सिरका ଖଡ଼ରେ ରଖି ସଢ଼ାଇ ଉକ୍ତ ଶର୍ଷ ସିର୍‌କା କରାଯାଏ ।]

ସିର୍‌ଖିସ୍ତ—ବୈଦେ· ବି (ଫା· ଶୀର୍‌ଖିସ୍ତ)—ଯବାସ ଶର୍କରା; ବୃକ୍ଷ-
Sir-khist ବିଶେଷର ଅଠାଳ ଜମା ଶ୍ୱେତବର୍ଣ୍ଣ ମିଷ୍ଟ ନିର୍ଯ୍ୟାସ—
সিরখিস্ত सीरखिस्त Manna.
[ଦ୍ର—ନାନା ବୃକ୍ଷରୁ ଏହି ନିର୍ଯ୍ୟାସ ମିଳେ । ତନ୍ମଧ୍ୟରେ ପଶ୍ଚିମ ହିମାଳୟର ବୃକ୍ଷବିଶେଷ [The common Ash, Fraxinus Floribunda ) ପ୍ରସିଦ୍ଧ । କୌଣସି କୌଣସି କାଳ୍ପନରୁ, ସରଳ ଗଛର ଡାଳରୁ ଓ ଅନ୍ୟ କେତେକ ଗଛରୁ ସିର୍‌ଖିସ୍ତ ମିଳେ । ପୋକମାନେ ଡାଳକୁ କ୍ଷତ କରିବାରୁ ଏ ନିର୍ଯ୍ୟାସ ବାହାରେ — ସୋଗେଣ୍ଟନ୍ ।]

ସିର୍‌ଚ(ଚାଁ)ନ୍ଦ —ଦେ. ବି—ହାତୀର କପାଳରେ ପିନ୍ଧାଯିବା ଅର୍ଦ୍ଧଚନ୍ଦ୍ରାକାର
Sir-cha(chā)nda ଅଳଙ୍କାର—A crescent-shaped
শিরচাঁদ सिरचांद ornament put on the brow of an elephant.

ସିର୍‌ଜନା—ଗ୍ରାଦେ [ଲିଖିଅ] ବି. [ଭୁଲ· ଚୁ. ସିର୍ଜନା]—ସର୍ଜନା—
Sir-jinā Creation.

ସିର୍‌ପେ(ପେଁ)ଚ—ବୈଦେ. ବି (ଫା· ସର୍ ନୁସର୍)-ଶିର୍‌ପେଚ୍ (ଦେଖ)
Sirpe(peñ)ch sir-pech. (See)

ସିର୍‌ଣି(ନି)—ବୈଦେ. ବି—ସିନ୍ନି (ଦେଖ)—Sinni. (See) ଦେ.
Sir-ṇi(ni) ବି—ଶ୍ରୀନିବାସର ଅନାଦରାର୍ଥକ ଡାକ ନାମ—Name-[ସିଣ୍ଟି —ଅନ୍ୟରୂପ] for calling Srinibasa.
(ସିରଣି[ନି]ଅ, ସିଣ୍ଟିଅ—ଅନାଦରାର୍ଥରୂପ)

ସିର୍ (ରୋ)ପା—ଦେ. ବି—ଶିର(ରୋ)ପା [ଦେଖ]
Sir-(ro)pā Sira(ro)pā. [See]

ସିର୍‌ଫାସି—ଗ୍ରାଦେ [ଉତ୍ତରାଞ୍ଚଳ] ବି—୧ । ଦଉଡ଼ିର ଏକପ୍ରକାର
Sir-phāsi ଗଣ୍ଠି ବା ଫାସ [ସର୍ତ୍ତିର ଏକ ଭାଗକୁ ଟାଣି ଦେଲେ ତାହା ଫିଟିଯାଏ)—1. A kind of slip-knot. ୨ । ଗଳାରେ ଲଗାଇ ଅତ୍ମହତ୍ୟା କରିବା ପାଇଁ ବ୍ୟବହୃତ ଫାସ ଲଗା ଦଉଡ଼ି—2. Noosed rope used for committing suicide by slipping it round the neck.

**ସିର୍ ସିର୍**—ଦେ. ଅ—୧ । ସଲ୍ ସଲ୍; ଦେହ ଉପରେ ହାଲୁକା ସୂତା
Sir-sir ବା ଘର ଅବ ଚଳାଇଲେ ଓ ପୋକ, ଅବ ଗୁଲୁଗଲେ
সির্ সির্, ଯେଉଁ ସର ଅନୁଭୂତ ହୁଏ—1. Light creeping
सरसर sensation over the skin. ୨ । ଜ୍ୱରର ଆକ୍ରମଣ
ଆଡିମୁଡି ହେଓଇ ପୂର୍ବରୁ ଦେହର ଅସୁସ୍ଥତା ବୋଧ ଅବସ୍ଥା—
सिहरी, सिहरना 2. Sickly feeling before an attack
of fever. ୩ । ଦେହ ଛେଚଲୁଟି ହେବା ଅବସ୍ଥା; ଦେହ
ହାତ ଗୋଡ଼ରେ ଦର୍ଦ୍ଦ ହେବା ଅବସ୍ଥା—3. Aching
sensation throughout the body. ୪ । ରୋମ
ଠାକୁରିବା ଅବସ୍ଥା; ରୋମାଞ୍ଚ—4. Horripilation.
୫ । ଦେହ ଶୀତେଇବା ଓ ଉତ୍କମ୍ପିତ କମ୍ପ ବା ଅବସ୍ଥା—
5. Feeling of cold and shivering in the body.

[ଦେହ] ସିର୍ ସିର୍ ହେବା—ଦେ. କ୍ରି—୧ । (ଦେହ) ସଲସଲ
Sir-sir hebā ହେବା; ଦେହ ଉପରେ ପିମ୍ପୁଡ଼ି ଗୁଲୁବାପରି
ସିର୍ ଷର୍(ରେ)ଇବା, ସିର ସିରବା, ସିର୍ ସିର୍(ରେ)ଇ ଉଠିବା, ସିର୍ ସିର୍(ରେ)ଇ ହେବା } ଅନ୍ୟରୂପ — ଜଣା ଯିବା—1. (the body) To
(গা)সির্ সিরকরা feel a creeping sensation on the
सिहरना skin. ୨ । (ଦେହ) ଜ୍ୱରାକ୍ରମଣ ପୂର୍ବରୁ ଅସୁସ୍ଥ ବୋଧ
କରିବା—2. (the body) To feel sickly or
feverish. ୩ । (ଦେହ) ଛେଚଲୁଟି ହେବା—3. (the
body) To have aching throughout the
system. ୪ । (ଦେହ) ରୋମ ଠାକୁରିବା—4. the
body) To have horripilation. ୫ । (ଦେହ)
ଶୀତେଇବା—5. (the body) To have a feeling of cold or shivering. ୬ । [ଲକ୍ଷଣାର୍ଥ]
କୌଣସି ବ୍ୟକ୍ତି ଉପରେ ବିରକ୍ତିରେ ମୁଖଭଙ୍ଗୀ କରିବା
ବା ଚିଡ଼ିବା—6. To frown on a person.

**ସିର**—ସଂ. ବି [ ସି. ଧାତୁ=ବନ୍ଧନ କରିବା+କର୍ତ୍ତୃ. ର ]—ପିପ୍ପଳୀ
Sira ମୂଳ—The root of Piper Nigrum, ଦେ. ବି
সির सोर [ ସଂ. ସିରା ]—ଶିରା; ନାଡ଼ୀ—Vein; artery.

**ସିରତ୍**—ପ୍ରାଦେ [ଛତିଶଗଡ଼] ବି—ସତ୍ୟ—
Sirat Truth.
ବିଣ—ସତ୍ୟ—True.

**ସିର(ର୍)ତାଜ**—ବୈଦେ. ବି [ଫା]—୧ । ମୁକୁଟ—1. Diadem.
Sira(r)tāja ୨ । ଶିରୋମଣି—2. A gem worn in the
brow. ୩ । [ଲକ୍ଷଣାର୍ଥ] ଶ୍ରେଷ୍ଠ ବ୍ୟକ୍ତି—3. (figurative) Chief or preeminent person.

**ସିରନା**—ବୈଦେ. [ କନ୍ନଡ଼ ] ବି—ଗମ୍ଭାରି ଗଛ—
Siranā Gmelina Arborea. (tree)

**ସିର[ର୍]ନାମା**—ବୈଦେ. ବି—ଶିରୋନାମା [ ଦେଖ ]
Sira[r]nāmā Sironāmā [ See ]

**ସିରମ**—ବୈଦେ. ବି ( ଇଂ. ସିରମ୍ )—ରକ୍ତ ମାଂସରୁ ବହୁବା ଧଳା
Siram সিরম सिरम ଲସା—Serum.

**ସିର ସିର**—ଦେ. କ୍ରି. ବିଣ—ଶିରା ପ୍ରଶିରାରେ; ଶିରେ ଶିରେ—
Sira sira Through every vein and artery.

**ସିରସ୍ତା**—ବୈଦେ. ବି [ ଫା. ସରସ୍ତା ]—୧ । ସରକାରୀ କାଗଜ—
Sirastā 1. Official record. ୨ । କଚେରି; ଲେଖା ପଢ଼ା
সেরিস্তা ହେବା କାର୍ଯ୍ୟାଳୟ—2. Office where records
सरिस्ता are kept. ଦେ. ବି—ହାତୀକୁ ପଣ କରିବା—
সাবেস্তা सिरिस्ता Breaking of an elephant.

**ସିରସ୍ତା କରିବା**—ଦେ. କ୍ରି—ହାତୀକୁ ପଣ କରିବା—To train or
Sirastā karibā break an elephant.
সাবেস্তা করা सिरिस्ता करना

**ସିରସ୍ତାଦାର୍**—ବୈଦେ. ବି ( ଫା. ସରିସ୍ତେଦାର୍ )—ଅଫିସର ପ୍ରଧାନ
Sirastādār କର୍ମଚାରୀ—Seristadar; the head of the
সেরিস্তাদার सरिस्तेदार ministerial officers of an office

**ସିରସ୍ତାଦାରି**—ବୈଦେ. ବି ( ଫା )—ସିରସ୍ତାଦାରଙ୍କ କାର୍ଯ୍ୟ—The
Sirastādari post or service of a Seristadar.
সেরিস্তাদারি सरिस्तेदारी

**ସିରସ୍ତା ପତର**—ଦେ. ବି ( ସତର )—୧ । ସିରସ୍ତା ଅଫ—
Sirastā patara 1. Office etc. ୨ । ସିରସ୍ତାର କାଗଜ-
সেরিস্তা सरिस्ता पतर ପତ୍ର—2. Office records.

**ସିରସ୍ତା ପୂଜା**—ଦେ. ବି—ସୁନିଆ ଓ ଶ୍ରୀପଞ୍ଚମୀ ଅବସରେ କାର୍ଯ୍ୟାଳୟର
Sirastā pūjā କାଗଜପତ୍ରର ପୂଜା—The worship of
সেরিস্তা পূজা the records on Suniān or
सरिस्ता पूजा Śripañchamī.

**ସିରା**—ସଂ. ବି (ସି. ଧାତୁ=ବନ୍ଧନ କରିବା+କର୍ତ୍ତୃ. ର+ଆ)—୧। ନାଡ଼ୀ;
Sirā ରକ୍ତବାହୀ ନାଡ଼ୀ ( ଦେଶଜ )—1. Artery, vein.
୨ । ଅମ୍ବୁବାହକ; ବାରିବାହନାର୍ଥ ବ୍ୟବହୃତ ଚର୍ମମୁଣା;
ଭିସ୍ତି—2. A water-carrier bag; bhisti. ଦେ.
ବି—ଶିରା ( ଦେଖ )—Śirā ( See ). ପ୍ରାଦେ. ବି
—୧। (ଗଞ୍ଜାମ; ତେଲୁଗୁ ଶବ୍ଦ)—ମସି; ସ୍ୟାହି; କାଳି—
1. Ink. ୨ । ( ସମ୍ବଲପୁର ) ପର୍ବତ ଅଗର ଚୂଡ଼ା;
କୂଟ—2. The summit of a mountain.
୩ । ( ଯାଜପୁର ) ଟୋକେଇ—
3. Basket of wicker work.

**ସିରାଇ**—ଦେ. ବି—୧ । ଶିରାଇ ( ଦେଖ )—1. Śirāi ( See )
Sirāi ୨ । ସରାଇ ( ଦେଖ )—2. Sarāi ( See ) (ଭୁ—
সরাই ଅଶୋଚ ଯାତ୍ରୀମାନଙ୍କ ସୁବିଧା ସକାଶେ ପଥରେ ସ୍ଥାନେ
सराय ସ୍ଥାନେ ସିରାଇ ବସାଇଥିଲେ—ଦ୍ୱାରସିଂହ, ଉତ୍କଳ
ଇତିହାସ । )

ସିରାଜ୍—ବୈଦେ· ବ—୧ । ( ଫା. ସିରାଜ ) ଏକପ୍ରକାର ମିଷ୍ଟ ଓ ମୃଦୁ
Sirāj ମଦ୍ୟ—1. A kind of sweet and mild wine. ୨ । ( ଫା. ସିରାଜ୍ ) ପ୍ରଦୀପ—2. Lamp.
ଦେ. ବ. ପୁଂ—ମୁସଲମାନଙ୍କ ନାମ—
A name of Mahommedans.

ସିରାଜ୍ ଉଦ୍(ଦି)ନ୍—ଦେ· ବ ( ନାମ )—୧ । ମୁସଲମାନଙ୍କ ନାମ—
Sirāj udi(ddi)n 1. A name of Mahommedan,
সিরাজ উদ্দিন males. ୨ । ଭାରତରେ ତ୍ରୟୋଦଶ ଶତା-
सिराजुद्दीन ବ୍ଦୀର ପ୍ରଥମ ଭାଗରେ ରାଜତ୍ୱ କରୁଥିବା ଦାସବଂଶୀୟ ମୁସଲମାନ୍ ରାଜା କୁତବୁଦ୍ଦିନଙ୍କର ଜଣେ ବଂଶଧର ରାଜା—
2. Name of one of the kings of the Slave Dynasty ( Mahommedan ) who ruled India in the 1st part of the 13th century.

ସିରାଜ୍ ଉଦ୍ଦୋ(ଦ୍ଦୌ)ଲା—ଦେ. ବ ( ନାମ ) ( ଫା. ସିରାଜ୍ ଉଦ୍ଦୌଲ୍;
Sirāj uddo(ddau)lā ସିରାଜ୍-ଉଦ୍-ଦଉଲ୍ = ରାଜ୍ୟର ପ୍ରଦୀପ)
সিরাজ উদ্দোলা —ବଙ୍ଗଳାର ଶେଷ ସ୍ୱାଧୀନ ନବାବ—
सिराजुद्दौला Seraj-ud-doula; the last independent Nawab of Bengal.
ସିରାଜ ଦ(ଦ)ଉଲ
ସିରାଜ୍ (ଦ୍)ଦୌ(ଦ୍ଦୌ)ଲା } ଅନ୍ୟରୂପ

[ ବ୍ର—ଏ ଅଲିବର୍ଦ୍ଦି ଖାଁଙ୍କ ଦୌହିତ୍ର । ଅଲିବର୍ଦ୍ଦି ଅପୁତ୍ରକ ହେବାରୁ ଏ ବଙ୍ଗ ନବାବଙ୍କ ରାଜଧାନୀ ମୁର୍ଶିଦାବାଦର ସିଂହାସନରେ ଖ୍ରୀ: ୧୭୫୬ ସାଲରେ ଅଧିଷ୍ଠିତ ହେଲେ । ଏହାଙ୍କର ବୟସ ସେତେବେଳେ ୧୭ ବର୍ଷ ମାତ୍ର ହୋଇଥିଲା । ଏହି ସମୟରେ ମୋଗଲ୍ ବାଦଶାହାଙ୍କ କ୍ଷମତା କ୍ରମଶଃ କ୍ଷୀଣ ହୋଇ ଆସୁଥିଲା । ବଙ୍ଗଦେଶ ମୋଗଲ୍ ବାଦଶାହାଙ୍କ ଅଧୀନ ଏକ ସୁବା ବା ପ୍ରଦେଶ ଥିଲେହେଁ ଅଲିବର୍ଦ୍ଦି କାର୍ଯ୍ୟତଃ ବଙ୍ଗର ସ୍ୱାଧୀନ ନବାବ ହୋଇଥିଲେ । ଅଲିବର୍ଦ୍ଦି ଖାଁଙ୍କଠାରୁ ଅନୁମତି ନେଇ ଇଂରାଜ ଇଷ୍ଟ ଇଣ୍ଡିଆ କମ୍ପାନୀ ସେମାନଙ୍କ କଲିକତା କୋଠିର ଅଧୀନତାରେ ପାଟଣା ଓ ଢାକାରେ ବାଣିଜ୍ୟ କୋଠି ଖୋଲିଥିଲେ ।

ସିରାଜ୍ ଉଦ୍ଦୌଲା ନବାବ ଗାଦିରେ ବସିବା ବେଳେ ଭାରତରେ ଇଂରାଜ ଓ ଫ୍ରେଞ୍ଚ୍ ଜାତିଙ୍କ ମଧ୍ୟରେ ଯୁଦ୍ଧ ହେବାର ଆଶଙ୍କା ଥିବାରୁ ଇଂରାଜମାନେ ଫ୍ରେଞ୍ଚ୍ ଆକ୍ରମଣରୁ କଲିକତାକୁ ରକ୍ଷା କରିବା ପାଇଁ ସେମାନଙ୍କର କଲିକତାସ୍ଥ କୋଠି ଓ ଫୋର୍ଟ୍ ଉଇଲିଅମ୍ ଦୁର୍ଗକୁ ନବାବଙ୍କ ବିନା ଅନୁମତିରେ ମରାମତି କଲେ । ନବାବ ଏହି ସମ୍ବାଦ ପାଇ ରାଗାନ୍ୱିତ ହୋଇ କଲିକତାସ୍ଥ ଦୁର୍ଗ ଆକ୍ରମଣ କରି ଜନତ୍ୟ ବନ୍ଦୀ ଶହେ ଇଂରାଜମାନଙ୍କୁ ଗୋଟିଏ ଛୋଟଗୃହ କାରାଗାରରେ ରାତିରେ ବନ୍ଦୀକରି ରଖିଲେ । ଏ ଗୃହରେ ପବନ ଯିବା ଆସିବାକୁ ଯଥେଷ୍ଟ ବାଟ ନ ଥିଲା । ସକାଳେ ଦେଖାଗଲା ଯେ, ସେମାନଙ୍କ ମଧ୍ୟରୁ ଅଧିକାଂଶ ରୁଦ୍ଧ ହୋଇ ମରି ଯାଇଥିଲେ । ଏହି ଘଟଣାକୁ ଇତିହାସରେ ଅନ୍ଧକୂପ ହତ୍ୟା (Tragedy of the Black-hole) ବୁଝା ଯାଇଅଛି ।

ମାନ୍ଦ୍ରାଜରେ ଥିବା ଇଂରାଜମାନେ ଏହି ସମ୍ବାଦ ଶ୍ରବଣରେ ଉତ୍ତେଜିତ ହୋଇ କ୍ଲାଇବଙ୍କ ନାୟକତ୍ୱରେ ସୈନ୍ୟ ସହିତ କଲିକତାକୁ ଆସି ସେଠାରୁ ମୁର୍ଶିଦାବାଦ ଆକ୍ରମଣ କରିବାକୁ ବାହାରିଲେ । ଏହା ଶୁଣି ସିରାଜ୍ ଉଦ୍ଦୌଲା ବାଟରେ ପଲାସି ନାମକ କ୍ଷେତ୍ରରେ ସୈନ୍ୟ ସେନ ଉପସ୍ଥିତ ହେଲେ । ନବାବଙ୍କ ସେନାରେ ପଚାଶ ହଜାର ପଦାତିକ, ଅଠର ହଜାର ଅଶ୍ୱାରୋହୀ ଓ ୫୦ଟି ତୋପ ଥିଲା । ଇଂରାଜଙ୍କ ସେନାରେ ଏଗାର ଶହ ଇଂରାଜ ସୈନ୍ୟ, ଦୁଇ ହଜାର ଦେଶୀ ( ମାନ୍ଦ୍ରାଜୀ ) ସିପାହି ଓ ୧୦ଟି ମାତ୍ର ତୋପ ଥିଲା । ସିରାଜଙ୍କ ସେନାପତି ମୀର୍ ଜାଫରଙ୍କୁ ବଙ୍ଗର ନବାବ୍ ରୂପେ ସିଂହାସନରେ ବସାଇବାର ଲୋଭ ଦେଖାଇ କ୍ଲାଇବ୍ ତାଙ୍କୁ କରଗତ କରି ନେଲେ ଏବଂ ପଲାସି ଯୁଦ୍ଧକ୍ଷେତ୍ରରେ (୧୭୫୭ ସାଲରେ ) ନବାବଙ୍କ ସୈନ୍ୟଙ୍କୁ ଆକ୍ରମଣ କଲେ । ନବାବଙ୍କ ସୈନ୍ୟମାନେ ଛତ୍ରଭଙ୍ଗ ହୋଇ ପଳାଇ ଗଲେ । ଫଳରେ କ୍ଲାଇବ୍ ଯୁଦ୍ଧରେ ଜୟୀ ହୋଇ ମୁର୍ଶିଦାବାଦକୁ ଅଗ୍ରସର ହେଲେ ଏବଂ ସେଠାରେ ମୀର୍ଜାଫର୍ଙ୍କୁ ବଙ୍ଗ ବିହାର ଓଡ଼ିଶାର ନବାବ ପଦରେ ବସାଇଲେ । ସିରାଜ ଉଦ୍ଦୌଲା ପଳାଇ ଗଲେ, କିନ୍ତୁ ମୀର୍ ଜାଫର୍ଙ୍କ ପୁଅ ତାଙ୍କୁ ଧରାଇ ଆଣି ହତ୍ୟା କଲେ । ଏହି ସୁବିଧା ଫଳରେ ମୀର୍ ଜାଫର୍ ଇଂରାଜମାନଙ୍କର ସମସ୍ତ କ୍ଷତି ପୂରଣ କଲେ ଓ କ୍ଲାଇବ୍ ପ୍ରଭୃତିଙ୍କୁ ପ୍ରଚୁର ଭେଟି ଦେଲେ । ପୁଣି ଇଂରେଜମାନଙ୍କୁ କଲିକତାର ଚବିଶ୍ ପ୍ରଗଣାକୁ ଜାଗିରରୂପେ ଦେଲେ । ଫଳତଃ ପଲାସି ଯୁଦ୍ଧଠାରୁ ବଙ୍ଗଦେଶ ଇଂରାଜମାନଙ୍କ କରଗତ ହେଲା । ଶୁଣାଯାଏ ଯେ, ସିରାଜ୍ ଉଦ୍ଦୌଲା ଅତ୍ୟାଚାରୀ ଥିଲେ ଏବଂ ଏହାଙ୍କ ଅତ୍ୟାଚାରପୀଡ଼ିତ ସାମନ୍ତ ରାଜା (ଯଥା—ନଦିଆର ରାଜା କୃଷ୍ଣଚନ୍ଦ୍ର), କୋଷାଧ୍ୟକ୍ଷ ଜଗତ୍ ସେଠ, କଲିକତାର ସେଠ ଉମିଚାନ୍ଦ) ଏହାଙ୍କୁ ସିଂହାସନଚ୍ୟୁତ କରିବାକୁ ଇଂରାଜମାନଙ୍କ ସହିତ ଷଡ଼ଯନ୍ତ୍ର କରିଥିଲେ । ]

ସିରାଜି—ବୈଦେ· ବ ( ଫା. ସିରାଜୀ )—ପାରସ୍ୟ ଦେଶୀୟ ଏକପ୍ରକାର
Sirāji ସୁମିଷ୍ଟ ଓ ମୃଦୁ ମଦ୍ୟ—A sweet and mild
সিরাজি wine of Persia. [ ବ୍ର—ଏହାର ଉଙ୍ଗ ଗୋଲାପୀ
सिराजी ଏବଂ ନିଶା ଚିତ୍ତଚଳନାଶକ୍ତିବର୍ଦ୍ଧକ ଓ ଅଳ୍ପ ହୋଇ ପାରସ୍ୟ ସାହିତ୍ୟରେ ପ୍ରସିଦ୍ଧ ଅଛି । ]

ସିରାନ (ଇତ୍ୟାଦି)—ଗ୍ରା. ବ (ସ. ସ୍ନାନ)—ସିନାନ ଇତ୍ୟାଦି (ଦେଖ)
Sirāna (etc) Sināna etc ( See )

ସିରାନା—ଦେ. ବ (ଫ. ସିରଃସ୍ଥାନ)—ପଲଙ୍କର ମୁଣ୍ଡ ପାଖର ବାଡ଼—
Sirānā The railing attached to the head of
সিরানা सिरहाना a bedstead or couch

ସିରା(ର)ପ୍—ବୈଦେ. ବ—ବୈଜ୍ଞାନିକ ପ୍ରଣାଳୀରେ କଡ଼ା, ଅମ୍ଳ ଓ
Sirā(ra)p ଚମଡ଼ା ପ୍ରଭୃତି ଜଳରୁ ବାହାରିବା ରସ ବା ଶର୍କରା
সিরাপ सिरप ଏକତ୍ର ମିଶ୍ରିତ ପ୍ରଣାଳୀ—Syrup.

ସିରାମଈ—ଦେ. ବ (ସଂ. ଶିବ+ଅମୟ)—ଶିରାମଈ (ଦେଖ)
Sirāmai Śirāmai. (See)

ସିରି—ପ୍ରାଦେ• ( ସମ୍ବଲପୁର ) ବ—ସୂତା କାଟିବାରେ ବ୍ୟବହୃତ
Siri ତୂଳାର ଲଳଣା—Roll of cotton used for
শিরী Spinning thread; skein. ଦେ. ବ—୧ । ରାମାନୁଜ
सिरी ସମ୍ପ୍ରଦାୟର ବୈଷ୍ଣବମାନେ କପାଳରେ ତିଳକ ସଙ୍ଗେ
ଦେଉଥିବା ନାଲି ବର୍ଣ୍ଣର ଚୂର୍ଣ୍ଣ— A red powder
used by anchorites of the Rāmānuja
sect to paint their forehead. ୨ । ଶିରୀ
ଇତ୍ୟାଦି ( ଦେଖ )—2 Śirī etc ( See )

ସିରିକା—ବୈଦେ. ବ—ଶିର୍କା ( ଦେଖ )—
Sirikā Śirkā ( See )

ସିରିଣି—ବୈଦେ• ବ (ଫା• ସିର୍ନୀ)—ଶିରିଣି ( ଦେଖ )
Sirini śirini ( See )

ସିରିୟା—ଦେ. ବ ( ନାମ )—ଶିରିଅ ( ଦେଖ )
Siriyā Śiriā ( See )

ସିରିସ—ବୈଦେ• ବ (ଫା. ସିରେଶ୍)—ଗୋମେଷାଦିଙ୍କ ଚର୍ମ, ଖୁର,
Sirisa ଶିଙ୍ଗ ଅବ ଅଉଠା ହୋଇ ଛିଅର କରାଯିବା ଏକପ୍ରକାର
সিরিস सरेस ଅଠା—Glue.
শিরীষ शिरीष ଦେ• ବ ( ସ. ଶିରୀଷ )—ଶିରୀଷ ( ଦେଖ )
Sirisha ( See )

ସିରିସ ଅଠା—ଦେ. ବ—୧ । ଗୋମେଷାଦିଙ୍କ ଚର୍ମ, ଖୁର, ଶିଙ୍ଗ ଅବ
Sirisa aṭhā ଅଉଠା ହୋଇ ପ୍ରସ୍ତୁତ କରାଯିବା ଏକପ୍ରକାର ଅଠା
সিরিশ আঠা —1. Glue. [ଦ୍ର—ଏହା ଶୁଖାଯାଇ ରଖାଯାଇ ଥାଏ
सरेस ଓ ଏହାକୁ ପାଣିରେ ବତୁରାଇ ନିଆଁରେ ଗରମ କଲେ
ଯେଉଁ ଅଠା ହୁଏ, ସେଥିରେ କାଠ ଆଦି ଯୋଡ଼ା ହୁଏ ।]
୨ । ଶିରୀଷ ଗଛର ଅଠାକଅ ରସ; ଗୁନ ଅଠା—
2. Gum arabic.

ସିରିସ କାଗଜ—ଦେ• ବ (ଫା. ସିରେସ୍+ଫା. କାଗଜ)—କାଚକୁ
Sirisa kāgaja ବାଲିପରି ଚୂର୍ଣ୍ଣ କରି ତାକୁ ସିରିସ ଅଠା ସାହାଯ୍ୟରେ
সিরিস কাগজ କାଗଜ ଉପରେ ବସାଇ ଶୁଖାଇ ତିଆରି କରାଯିବା
सिरीस कागज କାଗଜ, ଯାହା ଦ୍ୱାରା କାଠ ପାଲିସ ହୁଏ—
Glass paper. [ଦ୍ର—ଏହି କାଗଜରେ ଘଷି କାଠ ଓ
ଧାତୁ ଦ୍ରବ୍ୟମାନ ପାଲିସ୍ କରାଯାଏ ।]

ସିରି ସିରି—ଦେ. ଅ—ସିର୍ ସିର୍ (ଦେଖ)
Siri siri Sir sir (See)

(ଦେଖ) ସିରି ସିରି ହେବା—ଦେ. କ୍ରି—ସିର୍ ସିର୍ ହେବା (ଦେଖ)
Siri siri hebā Sir sir hebā (See)
(ସିରସିର[ରେ]ଇବା, ସିର ସିରିବା, ସିର ସିରା[ରୋ]ଇ ଉଠିବା,
ସିର ସିର[ରୋ]ଇ ହେବା—ଅନ୍ୟରୂପ)

ସିରୀ—ସ. ବ—୧ । ତନ୍ତ (ହ. ଶ)—1. Weaver's loom. ୨ ।
Siri ଲଙ୍ଗଳୀ; ଉଦ୍‌ଭିଦ୍‌ବିଶେଷ (ହ. ଶ)—2. Wolfs-
bane (plant).

ସିର୍କସ୍ତ—ବୈଦେ• ବ (ଫା• ସିକସ୍ତ)—ସିକସ୍ତ (ଦେଖ)
Sirkast Sikast.

ସିର୍କା—ବୈଦେ. ବ (ଫା)—ସିରକା (ଦେଖ)
Sirkā Sir-kā. (See)

ସିର୍କାସ୍ତ (ଇତ୍ୟାଦି)—ବୈଦେ. ବ (ଫା) —ଶିର୍କାସ୍ତ ଇତ୍ୟାଦି (ଦେଖ)
Sirkāst (etc) Śirkāst etc. (See)

ସିର୍ଜନ(ନା)—ଗ୍ରା• ବ ( ଅଶୁଦ୍ଧ 'ସୃଜନ'ର ବିକୃତ ଉଚ୍ଚାରଣ )—
Sirjana(nā) (ସ• ସର୍ଜନ) ସୃଷ୍ଟି; ସୃଷ୍ଟି—The creation.
সৃজন सिरजन

ସିଲ୍—ବୈଦେ. ବ (ଇଂ. ସୀଲ୍)—୧ । ରାଜା ଆଦିଙ୍କ ନାମାଙ୍କିତ
Sil ମୋହର; ନାମାଙ୍କିତ ମୁଦ୍ରା [ଦ୍ର-ଏଥିରେ ଅକ୍ଷରଗୁଡ଼ିକ ଓଲଟା
সীল, ହୋଇ ଖୋଳା ହୋଇଥାଏ; ଲଫାକୁ ବନ୍ଦ କରିବା ପରେ ବା
सील ପାର୍ଶେଲ ଉପରେ ଦେଇ ତା ଉପରେ ସିଲ୍ ଚାପି ଦେଲେ
ସିଲର ଅକ୍ଷରଗୁଡ଼ିକ ସିଧା ହୋଇ ଉଠେ । ଲେଫାଫା ଓ
ଚିଠି ପତ୍ର ସିଲ୍ କରାଯିବା ପରେ ବା ପାର୍ଶେଲ ସିଲ୍ କରା ଗଲେ
ହେଲେ ତାକୁ କେହି ଖୋଲି ନ ପାରନ୍ତି ନାହିଁ]—1. Seal.
୨ । ନାମାଙ୍କିତ ମୋହର ଦ୍ୱାରା ଚିଠି ଉପରେ ଦିଆଯିବା ମୁଦ୍ରା
—2. The seal put over a cover. ୩ । (ଇଂ.
pelter ) ଦସ୍ତା—3. Zinc. ବୈଦେ• ବ (ଇଂ: ସୀଲ୍)
সীল —ଉତ୍ତର ଓ ଦକ୍ଷିଣର ଶୀତପ୍ରଧାନ ଅଞ୍ଚଳର ଉପକୂଳବର୍ତ୍ତୀ
सील ପ୍ରଶାନ୍ତ ଓ ଆଟଲାଣ୍ଟିକ ସମୁଦ୍ରରେ ବାସକରୁଥିବା
ଏକପ୍ରକାର ଜଳଜନ୍ତୁ—The seal; Phoca Vitu-
lina. [ଦ୍ର—ଏମାନଙ୍କ ମୁହଁ କୁକୁର ଓ ବାଘଙ୍କ ମୁହଁପରି
ଏବଂ ଏମାନଙ୍କ ମୁହଁରେ ବାଘର ଅଦ୍ଭୁତ ପରି ନଖ ଅଛି ।
ସାଧାରଣତଃ ଏମାନଙ୍କର ଦନ୍ତ ଓ ଅଙ୍ଗୁଠିଯୁକ୍ତ ହାତପରି ଡେଣା
ଡେଣା ଓ ଖୁବ ଚଉଡ଼ା ଗୋଟିଏ ବା ଯୋଡ଼ିଏ ଲାଞ୍ଜ ଥାଏ ।
ଏମାନେ ଅଗ ହାତ ବା ଡେଣା ଦ୍ୱାରା ସ୍ଥଳଭାଗ ଉପରକୁ
ଚଢ଼ିବାର ପାଏ ଉଠି ଆସି ପାରନ୍ତି । ଘନ ଘନ ଲୋମର ଓ
ଆକାରର ସିଲ୍‌ମାନଙ୍କର ସ୍ଥଳଚର ଏକ ଜନ୍ତୁ ଜନ୍ତୁଙ୍କ ସଙ୍ଗେ
ସାଦୃଶ୍ୟ ଥିବା ଯୋଗୁଁ ସିନ୍ଧୁହସ୍ତୀ, ସିନ୍ଧୁବିଡ଼ାଳ, ସିନ୍ଧୁସିଂହ,
ସିନ୍ଧୁବ୍ୟାଘ୍ର ଆଦି ନାମ ଦିଆଯାଏ । ଏମାନଙ୍କ ଚମଡ଼ା ଓ
ଚର୍ବି ଯୋଗୁଁ ଲୋକେ ଏମାନଙ୍କୁ ଶିକାର କରନ୍ତି । କେତେକ
ସିଲ୍‌ଙ୍କ ଦେହରେ ଖୁବ୍ ସୂକ୍ଷ୍ମ ଓ କୋମଳ ଲୋମ ଥାଏ । ସେହି
ଲୋମରେ ପୋଷାକ କରାଯାଏ । ଉତ୍ତରମେରୁ ପ୍ରଦେଶରେ
ବାସ କରୁଥିବା ଏସ୍କିମୋ ନାମକ ଜାତି ଏମାନଙ୍କୁ ଶିକାର
କରନ୍ତି, କାରଣ ଏହା ସେମାନଙ୍କର ଏକମାତ୍ର ଖାଦ୍ୟ ।
ସେମାନେ କଞ୍ଚା ସିଲ୍ ମାଂସ ଭକ୍ଷଣ କରନ୍ତି । ଛୋଟ ନୌକାରେ
ଜଣେ ଏସ୍କିମୋ ବସି ସମୁଦ୍ରକୁ ଯାଏ ଓ ସିଲ୍‌କୁ ଦେଖିବା
ମାତ୍ରେ ଏକପ୍ରକାର ବର୍ଚ୍ଛା ବା ଟେଣ୍ଟା ତା ଉପରକୁ ଫିଙ୍ଗେ ।
ଏହି ବର୍ଚ୍ଛାର ଦେଶ ଗୋଟିଏ ଦଉଡ଼ିରେ ଛୋଟ ଶିକାରୀର
ହାତରେ ବନ୍ଧା ହୋଇଥାଏ । ସିଲ୍ ଦେହରେ ଟେଣ୍ଟା ବିଦ୍ଧ
ହେବା ପରେ ସେହି ଦଉଡ଼ି ଟାଣିବା ଦ୍ୱାରା ସିଲ୍‌କୁ ନିଆଯାଇ ତଟ

ସିଲ ନଙ୍କଟକୁ ଅଣେ ।] ଦେ. ବି(ସ. ଶୀଳ)—ବଙ୍ଗୀୟ ବଂଶୋପାଧି
सील ବିଶେଷ—A family title in Bengal. [ ଦ୍ର—
କଲିକତାର ପ୍ରସିଦ୍ଧ ସିଲବଂଶୀୟ ଜମିଦାରମାନଙ୍କର ବାର୍ଷିକ
ବହୁ ଲକ୍ଷ ଟଙ୍କାର ଆୟବିଶିଷ୍ଟ ଜମିଦାରୀ ବଙ୍ଗ ଦେଶ ତମାମ
ବିସ୍ତୃତ ।] ପ୍ରାଦେ (ସମ୍ବଲପୁର, ବସ୍ତର) ବି—ଶିଳ—
Pasting stoneslab.

ସିଲ୍ କ(ମା)ରିବା—ଦେ. କ୍ରି—୧ । ଚିଠି ଆଦି ବନ୍ଦ କରି ଜମା କବାଟ
Sil ka(mā)ribā ବା ବାକସ ଆଦି ବନ୍ଦ କରି ସେଥିରେ
ସିଲ କ(ମା)ରା ନାମାଙ୍କିତ ମୋହର ବା ଜଉମୁଦ ବସାଇବା—
सील करना 1. To seal a box or letter. [ଦ୍ର—ଏପରି
କଲେ ସିଲ୍‌ର ଅଧିକାରୀ ଭିନ୍ନ ଅନ୍ୟ କେହି ତାଙ୍କ ଅଜ୍ଞାତ-
ସାରରେ ଉକ୍ତ କବାଟକୁ ବା ବାକସକୁ ଖୋଲି ପାରିବେ
ନାହିଁ ।] ୨ । ସରକାରୀ ଆଦେଶପତ୍ର ଆଦି ଉପରେ ହାକିମଙ୍କ
ନାମଯୁକ୍ତ ମୋହର ଛାପିବା—2. To put a court's
or official seal on any document.

ସିଲ୍‌ଚର—ଦେ. ବି (ନାମ)—ମଣିପୁର ରାଜ୍ୟର ପୂର୍ବବର୍ତ୍ତୀ ଆସାମର
Sil-chara ଗୋଟିଏ ନଗର—Silchar (town) in
ସିଲଚର Assam. [ଦ୍ର—ଏଠାରେ ବ୍ରିଟିଶ୍ ଭାରତର 'ଲୁସାଇ
सिलचर ପାହାଡ଼'ର ନିକଟବର୍ତ୍ତୀ ଗୋଟିଏ ମହକୁମା ବା ସବ୍‌ଡିଭିଜନ୍
ଅଛି ।]

ସିଲ୍(ଲି)ପଟ୍(ର୍)—ବୈଦେ. ବି ( ଇଂ. ସ୍ଲିପର୍ )—ରେଲ ଲାଇନ
Sil(li)paṭ(r) ତଳେ ଅଡ଼ି ଭାବରେ ପକାଯିବା କାଠର କଡ଼ି—
ସିଲପଟ सिलपट Railway sleepers.

ସିଲ୍(ଲି)ପଟ୍(ଟା)—ବୈଦେ. ବିଣ ( ଇଂ. ସ୍ଲିପର୍ )—୧ । ସିଲ୍‌ପର୍
Sil(li)paṭ(ṭā) ପରି ସମତଳ ଓ ପତଳା—1. Level and
(ସିଲ୍[ଲି]ପଟିଆ—ଅନ୍ୟରୂପ) thin like the body of a
ସିଲପଟ sleeper. ୨ । କାର୍ଶ୍ୟ; କ୍ଷୀଣ—2. Emaciated.
सिलपट [ଦ୍ର—ଯେଉଁ ସ୍ତ୍ରୀଙ୍କ ସ୍ତନ ଉନ୍ନତ ନ ହୋଇ ବକ୍ଷସ୍ଥଳ
ଲଗ୍ନପ୍ରାୟ ହୋଇଥାଏ ଏବଂ ଯେଉଁ ସ୍ତ୍ରୀଙ୍କ ଛାତି ପାଖ
ଚଟକା ଦେଖାଯାଏ, ତାହାଙ୍କ ବକ୍ଷସ୍ଥଳକୁ ସିଲ୍‌ପଟ୍ ସଙ୍ଗେ
ତୁଳନା କରାଯାଏ ।]

ସିଲ୍‌ପା—ପ୍ରାଦେ. (ସମ୍ବଲପୁର ବି—ଶିଳପୁଆ—
Silpā Stone-pestle.

ସିଲ୍‌ବ(ଭ)ର—ବୈଦେ. ବି—୧ । ( ଇଂ. ସିଲ୍‌ଭର୍ ) ରୌପ୍ୟ;
Silba(bha)r ରୁପା—1. Silver. ୨ । (ଇଂ. ଜର୍ମାନ୍
ସିଲଭର ସିଲ୍‌ଭର୍ ) ରସାୟନିକ ପ୍ରକ୍ରିୟାରେ ନିର୍ମିତ ଓ ରୁପାପରି
सिलभर ଦେଖାଯିବା ଏକପ୍ରକାର ଧାତୁ—2. German
silver.

ସିଲ୍‌ବ(ଭ)ର୍ ଜୁବି(ବୁ)ଲି—ବୈଦେ. ବି (ଇଂ. ସିଲ୍‌ଭର୍+
Silba(bha)r jubi(bu)li ଜୁବିଲି )—ରାଜାଙ୍କର ୨୫ ବର୍ଷ
ସଲଭର ଜୁବିଲି , ରାଜତ୍ୱ ପୂରିବା ଉପଲକ୍ଷରେ ଅନୁଷ୍ଠିତ
सिलभर जुबिली ଆନନ୍ଦୋତ୍ସବ—Silver-jubilee.

ସିଲ୍ ମୁଦ—ଦେ. ବି (ଇଂ. ସୀଲ୍+ସଂ. ମୁଦ୍ରା)—ଚିଠି ଆଦି ଲଫାରେ
Sil muda ବନ୍ଦ ହେବା ପରେ ତା ଉପରେ ସିଲ୍ ମରାଯିବା—
ସିଲ ଛାପ साल मुहर Sealing of a closed cover.

ସିଲ୍ ମୁଦି—ଦେ. ବି—ଯେଉଁ ଅଙ୍ଗୁରୀୟକରେ ବ୍ୟକ୍ତିବିଶେଷଙ୍କ ନାମ
Sil mudi ଖୋଳା ହୋଇଥାଏ—A ring containing
ସିଲ ଆଂଟି a name engraved on it; signet ring.
मोहरवाली अंगुठी

ସିଲ୍ ମୋହ(ହୋ)ର—ବୈଦେ. ବି (ଏକାର୍ଥକ ସନ୍ଧତର; ଇଂ. ସିଲ୍
Sil moha(ho)ra +ଆ. ମୁହର୍=ମୁଦ୍ରା )—ନାମାଙ୍କିତ
ସିଲ ମୋହବ सिल मोहर ମୁଦ୍ରା ବା ମୋହର—A seal.

ସିଲ୍‌ଲୋଡ଼ା—ପ୍ରାଦେ. ( ବସ୍ତର ) ବି—ଶିଳପୁଆ; ଶିଳପୁଅ—
Sil-lorḍā Stone-pestle.

ସିଲ୍ ସିଲା—ବୈଦେ. ବି ( ପା. )=ବ୍ୟବସ୍ଥା; ବନ୍ଦୋବସ୍ତ—
Sil-silā Arrangement. ପ୍ରାଦେ ( ଛତିଶଗଡ଼ ) ବି—
ପ୍ରବାଦ—Proverb; saying.

ସିଲ୍‌ହଟ୍—ଦେ. ବି ( ନାମ )—ସିଲଟ୍ [ ଦେଖ ]
Sil-haṭ Silaṭ [ See ]

ସିଲା—ପ୍ରାଦେ. ( ଗଞ୍ଜାମ ଓ ଗଡ଼ଜାତ ) ବି—ଶିଳ [ ଦେଖ ]—
Sila 1. Śila [ See ] ୨ । ( ସମ୍ବଲପୁର ) ଶିଳ—
ସୁବିଧା 2. A stone slab used as mortar. ଦେ.
सुविधा ୧ । ଶିଳ [ ଦେଖ ]—1. Śila [ See ] ୨ । ଶସ୍ତା-
ପଣ—2. Cheapness. ୩ । ସୁବିଧା—3. Con-
ଶସ୍ତା venience. ଦେ. ବିଣ—୧ । ଶସ୍ତା—1. Cheap.
सुविधाजनक ୨ । ସୁବିଧାଜନକ—2. Convenient.

ସିଲ ( ଇତ୍ୟାଦି )—ପ୍ରାଦେ. ବି—ଶିଳ ଇତ୍ୟାଦି [ ଦେଖ ]
Sila ( etc ) Śila etc [ See ]

ସିଲଖ(ଖି)ଲ—ପ୍ରାଦେ. (କୌଦ) ବି—ଶୃଙ୍ଖଳା—Method. [ଦ୍ର—
Silakha(khi)lā ଦାମଡା ସିଲଖିଲରେ ପଢ଼ୁଥିବ । ]

ସିଲଙ୍ଗ—ଦେ. ବି ( ନାମ )—ଆସାମ ପ୍ରଦେଶର ଲାଟ ସାହେବଙ୍କ
Silaṅg ଗ୍ରୀଷ୍ମାବାସ ରାଜଧାନୀ—Shillong in Assam. [ଦ୍ର—
ସିଲଙ୍ଗ ଏହା ଖାସୀ ବା ଜନ୍ତ ଆ ଜାତିର ରାଜ୍ୟ ମଧ୍ୟ ଏବଂ ପର୍ବତ
सिलांग ଉପରେ ଅବସ୍ଥିତ । ଏହି ପର୍ବତରୁ ଗୋଟିଏ ଗୋ ନଦୀ
ଯାଇ ବ୍ରହ୍ମପୁତ୍ରରେ ମିଶିଅଛି । ]

ସିଲଟ୍—ବୈଦେ. ବି ( ଇଂ. ସ୍ଲେଟ୍ )—ସ୍ଲେଟ୍ ପଥର; ପେନ୍‌ସିଲ୍‌ରେ
Silaṭ ଲେଖିବା ପାଇଁ ଶିଶୁମାନଙ୍କ ବ୍ୟବହୃତ କୃଷ୍ଣବର୍ଣ୍ଣ ପ୍ରସ୍ତରର
ସିଲେଟ सिलेट ବା ମାଟିର ଫଳକ—Slate.
ସିଲହେଟ ଦେ. ବି ( ନାମ )—ସିଲ୍‌ହଟ୍; ଆସାମ ପ୍ରଦେଶର
सिलहट ମଧ୍ୟବର୍ତ୍ତୀ ଗୋଟିଏ ଜିଲ୍ଲା ଓ ତହିଁର ରାଜଧାନୀ—
Sylhet; a district and town in Assam.
[ ଦ୍ର—ଏହା ନିକଟରେ ଗୋଟିଏ ଜଳ ବହୁଯାଇ ବ୍ରହ୍ମ-
ପୁତ୍ରରେ ପଡ଼ୁଅଛି । ଏଠାରେ ପ୍ରଚୁର ପରିମାଣରେ ଚିଆ
ଉତ୍ପନ୍ନ ହେଉଅଛି । ] ଦେ. ବିଣ—ସିଲଟ ( ଦେଖ )
Silaṭ ( See )

ସିଲଟ୍ (ଟି) କମଳା—ଦେ. ବି—ସିଲହଟ୍ ଅଞ୍ଚଳର ମିଠା ଲେମ୍ବୁ—
Silat (ti) kamalā Sweet orange of Sylhet.
সিলহেট কমলা सिलहट कमला

ସିଲଟ୍ ଖଡ଼ି—ଦେ. ବି—ସିଲଟ୍ ପିନ୍‌ସିନ୍ (ଦେଖ)
Silat khardi silat pin-sin (See)
সিলেট পেনসিল सिलेट पेनसिल

ସିଲଟ୍ ପଟା—ଦେ. ବି—ସ୍ଲେଟ୍ ଫଳକ—Slate.
Silat patā সিলেট सिलेट पटा

ସିଲଟ୍ ପି(ପେ)ନ୍(ନି)ସିନ୍(ଲ୍, ନି, ଲି)—ବୈଦେ. ବି (ଇଂ. ସ୍ଲେଟ୍ ପେନ୍‌ସିଲ୍)—
Silat pi(pe)n(ni)sin(l, ni, li)
সিলেট পেনসিল सिलेट पेनसिल ୧। ସ୍ଲେଟ ଉପରେ ଲେଖିବା (ସିଲଟ୍ ପି[ପେ]ନ୍‌ସିନ୍[ଲ୍, ନି, ଲି]—ଅନ୍ୟରୂପ) ପାଇଁ ବ୍ୟବହୃତ ମାଟିର ଲେଖଣୀ—1. Slate-pencil. ୨। ଲେଖିବାର ଉପକରଣଦ୍ୱୟ-ସ୍ଲେଟ୍ ଓ ପେନ୍‌ସିଲ୍—
2. Slate and pencil.

ସିଲଟି—ଦେ. ବିଣ—ଆସାମର ସିଲହଟ୍ ଅଞ୍ଚଳର—Belonging to
Silati to Sylhet. (ଯଥା—ସିଲଟି କମଳା।)
সিলহেটী सिलहटिया

ସିଲନ୍ଦ(ଧ)—ସଂ. ବି—ଶିଲନ୍ଦ (ଦେଖ)
Silanda(ndha) silinda (See)

ସିଲା—ବୈଦେ. ବି (ଅ. ସିଲହ୍)—୧। ଜମିର କଟା; ଜମିର ଖଣ୍ଡ—
Silā 1. A strip or plot of land. ୨। ଜମିର ଲମ୍ବ ଚଉଡ଼ାବିଶିଷ୍ଟ ଲମ୍ବା ସେଜ; ପଟି—2. A long or thin strip of land. ୩। ଭାଗବାଣ୍ଟରେ ପ୍ରତ୍ୟେକ ଅଂଶୀଦାରର ହିସାବରେ ପଡ଼ିଥିବା ଜମିର ଭଳିଚ ଲମ୍ବା ପଟି—3. A long strip or block of land allotted to each co-sharer in a partition. ପ୍ରାଦେ. ବି—୧। (ବାଲେଶ୍ୱର) ଏକପ୍ରକାର ଲୁଣି ମାଛ—1. A species of sea-fish. ୨। (ଗଡ଼ଜାତ) ବୋଧ (ବନ୍ଦେକୋବି, ବନ୍ଧାକୋବି)—2. Cabbage.
কিতা
किता

ସିଲା(ଲେ)ଇ—ଦେ. ବି (ସଂ. ସିବ୍ ଧାତୁ)—
Silā(le)i ସିଲାଇ—Sewing.
সেলাই सीलाई

ସିଲା(ଲେ)ଇ କରିବା—ଦେ. କି—ସିଇଁବା—To sew.
Silā(le)i karibā সেলাই করা सीलाई करना

ସିଲା(ଲେ)ଇ କଳ—ଦେ. ବି—ସିଇଁବା ପାଇଁ ବ୍ୟବହୃତ ଯନ୍ତ୍ର—
Silā(le)i kala Sewing machine.
সেলাইএর কল सीलाई कल

ସିଲାୱାରୀ(ରି)—ବୈଦେ. ବିଣ(ଫା)—୧। ସିଲା ସମ୍ବନ୍ଧୀୟ—
Silāuār(ri) 1. Relating to strips or allotments.
কিতাওয়ারী ବୈ. କି. ବିଣ—ସିଲା ସିଲା କରି—In strips.
कीताबार (ସିଲାୱାର[ରି]—ଅନ୍ୟରୂପ)

ସିଲା ଉଆରି କରିବା—ବୈଦେ. କ୍ରି(ଫା)—କଟା ଉଆରି ମାପ; ଜମିକୁ
Silā uāri jariba କଟା କଟା କରି ମାପିବା—The measrement of land by strips.
সিলা ওয়ারী জরিব
कितावार जरीब
ସିଲା ଉଆରି ମାପ, ସିଲା ୱାର କରିବ, ସିଲା ୱାର ମାପ } ଅନ୍ୟରୂପ

ସିଲା(ଲେ)ବସ୍—ବୈଦେ. ବି (ଇଂ. ସିଲାବସ୍)—ପାଠ୍ୟ କର୍ଯ୍ୟସୂଚୀ;
Silā(le)bas ଶିକ୍ଷାବର୍ଷରେ ପଢ଼ିବାକୁଥିବା ବିଷୟ ପାଠ
সিলেবস सिलेबस ସମ୍ବନ୍ଧୀୟ ସଙ୍କେତ ବା ତାଲିକା—Syllabus.

ସିଲି—ପ୍ରାଦେ. (ସମ୍ବଲପୁର) ବି—ଶଗଡ଼ ଚକ—
Sili Cart-wheel.

ସିଲିକ୍—ବୈଦେ. ବି (ଇଂ. ସିଲ୍କ୍)—ରେଶମ; ରେଶମ—Silk.);
Silik ବୈଦେ. ବିଣ—ରେଶମୀ—Silk (as in silk cloth);
সিলক सिल्क [ସିଲ୍କ—ଅନ୍ୟରୂପ] silken.

ସିଲି ଗୁଡ଼ି—ଦେ. ବି (ନାମ)—ବଙ୍ଗ ଦେଶର ଶିଲିଗୁଡ଼ିର ଦାର୍ଜିଲିଙ୍ଗ
Sili gurdi ଯିବା ରେଲପଥର ଗୋଟିଏ ଷ୍ଟେସନ—Siliguri, a
সিলিগুড়ি सिलि गुड़ि railway station near Darjeeling.

ସିଲିଙ୍ଗ୍—ବୈଦେ. ବି (ଇଂ. ଶିଲିଙ୍ଗ୍)—ଇଂଲଣ୍ଡର ରୌପ୍ୟ
Siling ମୁଦ୍ରା—Shilling (coin.)
সিলিঙ্গ सिलिंग (ଶିଲିଂ—ଅଶୁଦ୍ଧ ବନାନ)

ସିଲିନ୍ଦ(ଧ)—ସଂ. ବି (ଅନ୍ୟ ରୂପ ଶିଳନ୍ଦ)—ଶିଳନ୍ଦ (ଦେଖ)
Silinda(ndha) Silinda. (See)

ସିଲିପ(ପି)—ବୈଦେ. ବି (ଇଂ. ସ୍ଲିପ୍)—କାଗଜର ଛୋଟ ଖଣ୍ଡ—
Silip(pi) Slip of paper.
সিলিপ स्लीप

ସିଲିବ(ଭ)ର୍—ବୈଦେ. ବି—ସିଲ୍‌ବର୍ (ଦେଖ)
Siliba(bha)r Sil-bar. (See)

ସିଲି ସିଲି—ଦେ. ବିଣ ଓ କି ବିଣ—ମୃଦୁ ମୃଦୁ (ପବନ)—Sweet
Sili sili and mild (breeze). [ଯଥା—ସିଲିସିଲି ପବନ ଫୁରଫୁରେ ସନସନ ଝିଲିବେଲିଲ। ଫଗାରମୋହନ, ଗଳ୍ପସ୍ୱଳ୍ପ।]

ସିଲେଇ (ଇତ୍ୟାଦି)—ଦେ. ବି—ସିଲାଇ ଇତ୍ୟାଦି (ଦେଖ)
Silei (etc) Silāi etc. (See)

ସିଲେକ୍ଟ୍—ବୈଦେ. ବି (ଇଂ. ସିଲେକ୍ଟେଡ୍)—ବଚ୍ଛାଯାଇ; ବଛା
Silekt ହୋଇ ଥିବା—Selected.
সিলেক্ট सिलेक्ट

ସିଲେକ୍ଟ କମିଟି—ବୈଦେ. ବି (ଇଂ. ସିଲେକ୍ଟ କମିଟୀ)—ବୈଧାନିକ
Silekt kamiti ସଭାର କୌଣସି ପ୍ରସ୍ତାବ ବିଷୟରେ ଆଲୋଚନା କରିବା ପାଇଁ ସଭାର ସଦସ୍ୟମାନଙ୍କ ମଧ୍ୟରୁ ବଛାଯାଇଥିବା ସଦସ୍ୟଙ୍କ ଦ୍ୱାରା ଗଠିତ ସମିତି—Select committee.
সিলেক্টকমিটি सिलेक्टकमिटी

ସିଲେକ୍ଟ କରିବା—ବୈଦେ. କି.—ବଛାଯାଇ କରିବା—
Silekt karibā To select.
সিলেক্ট করা सिलेक्ट करना

**ସିଲେକ୍ସନ୍**—ବୈଦେ. ବି ( ଇଂ. ସିଲେକ୍‌ସନ୍ )—୧ । ବହୁ ଲୋକ
Sileksan ବା ବସ୍ତୁ ମଧ୍ୟରୁ ବଛାବଛି—1. Selection. ୨। ବହୁ
ସିলেক্সন পুস্তକରୁ ବା ଲେଖାରୁ ସଂଗୃହୀତ ଓ ଉଦ୍ଧାରିତ ସଙ୍କଳନ—
सिलेक्सन 2. Selection of passages or extracts from various sources.

**ସିଲେକ୍ସନ୍ କମିଟି**—ବୈଦେ. ବି (ଇଂ)—ଯେଉଁ କମିଟି କୌଣସି
Sileksan kamiṭi କର୍ମ ପାଇଁ ବହୁ ପ୍ରାର୍ଥୀଙ୍କ ମଧ୍ୟରୁ ଉପଯୁକ୍ତ
সিলেক্সন কমিটি ବ୍ୟକ୍ତି ବାଛନ୍ତି—Selection committee.
सिलेक्सन कमिटि

**ସିଲେଟ୍** (ଇତ୍ୟାଦି)—ବୈଦେ. ବି—ସିଲଟ ଇତ୍ୟାଦି (ଦେଖ)
Sileṭ (etc) Silaṭ etc. (See)

**ସିଲୋନ୍**—ବୈଦେ. ବି (ନାମ) (ଇଂ. ସିଲୋନ୍; ମୂଳ. ସଂ. ସିଂହଳ)—
Silon ସିଂହଳଦ୍ୱୀପ; ଲଙ୍କା—Ceylon.
সিলোন सिलोन

**ସିଲ୍‌କ୍**—ବୈଦେ. ବି ଓ ବିଣ—ସିଲିକ୍ (ଦେଖ)
Silk Silik. (See)

**ସିଲ୍‌(ଲ୍ପି)**—ବୈଦେ. ବି—ସିଲିପ୍ (ଦେଖ)
Silp(lpi) Silip. (See)

**ସିଲ୍‌ଭର୍**—ବୈଦେ. ବି—ସିଲ୍‌ବର୍ (ଦେଖ)
Silbhar Sil-bar. (See)

**ସିଲ୍ଲ**—ପ୍ରାଦେ (ଗଞ୍ଜାମ)—୧ । ବିଦାୟ—1. Leave to go
Silla away. ୨ । ଅନୁମତି—2. Permission.

**ସିଲ୍ଲ ହେବା**—ପ୍ରାଦେ [ଗଞ୍ଜାମ] କ୍ରି—ବିଦାୟ ଗ୍ରହଣ କରିବା—
Silla hebā To take leave.

**ସିଲ୍ଲିଙ୍ଗି ଦେବା**—ପ୍ରାଦେ [କୋରାପୁଟ] କ୍ରି. [ତେ. ସିଲ୍ଲିଂଗି]—ପାଙ୍ଗିବା
Silliṅgi debā (ଦେଖ)—Pāṅgibā. (See)

**ସିଲ୍ହକ**—ସଂ. ବି—ଶିଳାରସ [ହି. ଶ]
Silhaka Benzoin; styrax.
[ ସିଲ୍‌ହ—ଅନ୍ୟରୂପ ]

**ସିସ୍** (ଇତ୍ୟାଦି)—ଦେ. ବି (ଧ୍ୱନ୍ୟନୁକରଣ)—ଶିସ୍ ଇତ୍ୟାଦି (ଦେଖ)
Sis (etc) Śis etc. (See)

**ସିଶୁ(ସୁ)**—ଦେ. ବି [ ସଂ. ଶିଂଶପା ]—୧ । ଶିଶୁ ୫ [ ଦେଖ ]—
Sisu(su) 1. Śisu 5. (See) ୨ । ଶିଂଶପା ଗଛ—2. The
শিশু शिशुक sissoo tree.

**ସିଷର**—ଦେ. ବି [ସଂ. ଶୁଷିର]—ସିଟି; ସିଟି ମାରିବା ଯନ୍ତ୍ର—
Sishara সিটি सिटी A whistle.

**ସିଷାଧୟିଷା**—ସଂ. ବି [ସାଧ୍ ଧାତୁ+ଇଚ୍ଛାର୍ଥେ ସନ୍+ଭାବ. ଅ+
Sishādhayishā ଆ]—ସାଧନ କରିବାର ଇଚ୍ଛା—
A desire to accomplish.

**ସିଷାଧୟିଷୁ**—ସଂ. ବିଣ [ସାଧ୍ ଧାତୁ+ଇଚ୍ଛାର୍ଥେ ସନ୍+କର୍ତ୍ତୃ.
sishādhayishu ଉ]—ସାଧନେଚ୍ଛୁ—Desirous of accomplishing.

**ସିଷୁମ୍ଣା (ନା)**—ଗ୍ରା. ବି [ଅଦେଶ]—ସୁଷୁମ୍ନା [ଦେଖ]
Sishumṇā(nā) Sushumṇā. [See]

ସୁଷୁମ୍ନା [ଭ୍ର—ପିଅଁଳା ଯମୁନା ନଦୀ ଅଟଇ, ସିଷୁମ୍ନା ସରସ୍ୱତୀ ସେ
सिसुमणा ହୋଇ । ପ୍ରାଚୀ. ଚରିତେ ଗୀତା ।]

**ସିଷୁମ୍ନା(ମ୍ନା)**—ଦେ. ବି [ଅଦେଶ]—ସୁଷୁମ୍ନା [ଦେଖ]
Sishumnā(mnā) Sushumnā. [See]
ସୁଷୁମ୍ନା [ଭ୍ର—ଇଅଁଳା ପିଅଁଳା ସିଷୁମ୍ନା ତିନ । ପ୍ରାଚୀ. ଚରିତେ
सिसुमणा ଗୀତା ।]

**ସିସଲ**—ବୈଦେ. ବି [ଆ. ଫିସ୍‌ଲ୍ ଫିସ୍ଲ]—୧ । ବ୍ୟବସ୍ଥା—
Sisala 1. Arrangement. ୨ । ନିଷ୍ପତ୍ତି; ମୀମାଂସା—
ব্যবস্থা 2. Decision. ବୈଦେ. ବିଣ—ମୀମାଂସିତ—
सिलसिला Decided; settled.

**ସିସା** (ଇତ୍ୟାଦି)—ଦେ. ବି [ସଂ. ସୀସକ]—ଶିଶା ଇତ୍ୟାଦି [ଦେଖ]
Sisā (etc) Śiśā etc. [See]
ପ୍ରାଦେ [କୋଦ] ବି—ଉଡ଼ନ୍ ପେନ୍ସିଲ୍—Wooden pencil.

**ସି[ସିଂ,ସିଁ]ସି**—ବୈଦେ. ବି [ଫା. ଶିଶୀ]—ଶିଶି [ଦେଖ]
Si[siṅ,siṅ]si Śiśi. [See]

**ସିସି(ସେ)ରୋ**—ବୈଦେ. ବି[ଲାଟିନ୍ ନାମ]—ରୋମର ସୁପ୍ରସିଦ୍ଧ ଦାର୍ଶନିକ
Sisi(se)ro ନେତା ଓ ବାଗ୍ମୀପ୍ରବର—The great orator
সিসেরো Cicero. [ଭ୍ର—ଏହାଙ୍କର ଜନ୍ମ ଖ୍ରୀ: ପୂ:୧୦୬ ଏବଂ ମୃତ୍ୟୁ
सिसिरो ଖ୍ରୀ: ପୂ:୪୩ ଅବ୍ଦରେ । ଏ ବ୍ୟବହାରଶାସ୍ତ୍ରକୁ ଅବଲମ୍ବନ
କରି ନିଜ ବାଗ୍ମିତାର ଉନ୍ନତି ସାଧନାର୍ଥେ ଗ୍ରୀସ୍‌କୁ ଯାଇ
ସେଠାରେ ବହୁ ପଣ୍ଡିତଙ୍କଠାରୁ ବାଗ୍ମିତା ଶିକ୍ଷା କରିଥିଲେ
ଏବଂ ୪୦ ବର୍ଷ ବୟସରେ ରୋମ୍ ସାମ୍ରାଜ୍ୟର ଏକ
ପ୍ରଦେଶର ଶାସନକର୍ତ୍ତା [Consul] ରୂପେ ମନୋନୀତ
ହୋଇଥିଲେ । ପରେ ଶତ୍ରୁମାନଙ୍କ ଭୟରେ ଏ ଇଟାଲୀ
ପ୍ରଦେଶ ଛାଡ଼ି ପଳାଇଥିଲେ, କିନ୍ତୁ ପୁଣି ଦେଶକୁ ଫେରି
ଆସିଲେ । ଏହାଙ୍କ ଶତ୍ରୁମାନେ ସିଜର୍‌ଙ୍କ ହତ୍ୟାକାଣ୍ଡରେ
ଏ ଲିପ୍ତ ଥିବାର ପ୍ରମାଣିତ କରିବାରୁ ଏହାଙ୍କୁ ଚରମ
ଦଣ୍ଡାଜ୍ଞା ହେଲା ଏବଂ ଏ ଦଣ୍ଡ ଏଡ଼ିବା ନିମନ୍ତେ ପଳାଇ
ଯାଉ ଯାଉ ବାଟରେ ଶତ୍ରୁମାନେ ଏହାଙ୍କ ଶିରଚ୍ଛେଦନ
କଲେ । ଏହାଙ୍କର ବାଗ୍ମିତାପୂର୍ଣ୍ଣ ବକ୍ତୃତାମାନ ଯାବତୀୟ
ସଭ୍ୟ ଭାଷାରେ ଅନୁବାଦିତ ହୋଇ ୨୦୦୦ ବର୍ଷ ପରେ
ମଧ୍ୟ ଆଜି ପଣ୍ଡିତମାନଙ୍କର ବହୁ ସମାଦର ଲାଭ କରୁଅଛି ।]

**ସିସୃକ୍ଷା**—ସଂ. ବି ( ସୃଜ୍ ଧାତୁ+ଇଚ୍ଛାର୍ଥେ ସନ୍+ଭାବ. ଅ+ ଆ)—
Sisṛukshā ସର୍ଜନ ବା ନିର୍ମାଣ କରିବାର ଇଚ୍ଛା—
Desire to create.

**ସିସୃକ୍ଷୁ**—ସଂ. ବିଣ ( ସୃଜ୍ ଧାତୁ+ଇଚ୍ଛାର୍ଥେ ସନ୍+କର୍ତ୍ତୃ. ଉ )—
Sisṛukshu ସୃଷ୍ଟି କରିବାକୁ ଇଚ୍ଛୁକ; ନିର୍ମାଣ କରିବାକୁ ଅଭିଳାଷୀ
—Desirous of creating.

**ସିସୋଦୀୟ୍**—ଦେ. ବିଣ—ସିସୋଦୀୟା କୁଳର—Belonging to
Sisodīya the Sisodiyā clan of the Rajputs
সিসোদীয় सीसोदिय

**ସିସୋଦୀୟା**—ଦେ· ବି—ରାଜପୁତାନାର ରାଜପୁତମାନଙ୍କର ଏକ ପ୍ରସିଦ୍ଧ ଶାଖା—A celebrated branch of the Rajputs. [ଦ୍ର—ରାଜପୁତନାର ସିସୋଦ ନାମକ ସ୍ଥାନରେ ଏ ଶାଖାର ବ୍ୟକ୍ତିମାନେ କିଛି ଦିନ ବାସ କରିଥିବାରୁ ଉକ୍ତ ସ୍ଥାନର ନାମ ଅନୁସାରେ ଏ ଶାଖାର ନାମ ହୋଇଅଛି । କ୍ଷତ୍ରିୟମାନଙ୍କ ମଧ୍ୟରେ ଏମାନଙ୍କ ପ୍ରତିଷ୍ଠା ସର୍ବୋଚ୍ଚ । ଚିତୋର ଏମାନଙ୍କ ପ୍ରାଚୀନ ରାଜଧାନୀ ଓ ଉଦୟପୁର ବର୍ତ୍ତମାନ ରାଜଧାନୀ । ଏମାନେ ସୂର୍ଯ୍ୟବଂଶୀୟ ରାଜା ରାମଚନ୍ଦ୍ରଙ୍କ ବଂଶଧର ବୋଲି କଥିତ । ଏମାନେ ପ୍ରଥମେ ଗୁଜୁରାଟର ବଲ୍ଲଭୀପୁରରେ ରାଜତ୍ୱ କରୁଥିଲେ, ପରେ ଚିତୋରର ପ୍ରାଚୀନ ରାଜାଙ୍କୁ ପରାସ୍ତ କରି ସେଠାରେ ରାଜ୍ୟ ସ୍ଥାପନ କଲେ । ମୁସଲମାନ୍ ଓ ମୋଗଲ୍ ରାଜତ୍ୱ କାଳରେ ମଧ୍ୟ ଚିତୋର ହିନ୍ଦୁ ରାଜଶକ୍ତିର ପ୍ରଧାନ ସ୍ଥାନ ଥିଲା । ଏ ବଂଶର ରାଜାମାନଙ୍କ ଉପାଧି ରାଣା । ରାଣା ସମର ସିଂହ, ରାଣା କୁମ୍ଭା, ରାଣା ସଂଗ୍ରାମ ସିଂହ ମୁସଲମାନଙ୍କ ସଙ୍ଗେ ବୀରତା ସହକାରେ ଯୁଦ୍ଧ କରିଥିଲେ । ରାଣା ପ୍ରତାପ ସମ୍ରାଟ୍ ଆକବରଙ୍କ ବଶତା ସ୍ୱୀକାର କରି ନଥିଲେ । ଉଦୟପୁର ରାଜ୍ୟ ( ୧୨୬୯୦ ବର୍ଗ ମାଇଲ, ଲୋକ ସଂଖ୍ୟା ୧୪ ଲକ୍ଷ )ର ମହାରାଣା ଏହି ବଂଶୀୟ ଅଟନ୍ତି—ହିନ୍ଦୀ-ଶବ୍ଦସାଗର । ]
Sisodiyā
ସିସୋଦୀୟା
सिसोदिया

**ସିସ୍ତ**—ଦେ· ବି ( ସଂ· ଶସ୍ତ୍ର )—୧ । ଯନ୍ତ୍ରାଦି—1. Implements. ୨ । ଶସ୍ତ୍ର; ଉପାୟ—2. Means. ୩ । କାର୍ଯ୍ୟ ସାଧନର ଉପାୟ—3. Means employed for accomplishment of an end.
Sista
ଯନ୍ତ୍ର शस्त्र

**ସିସ୍ତି**—ବୈଦେ· ବି ( ଫା, ସିସ୍ତୀ )—ମାପିବା ଚେନ୍ ସଙ୍ଗେ ଭୂମିରେ ପୋତିବା ପାଇଁ ବ୍ୟବହାର କରାଯିବା ଲୁହାର ପିନ୍—Iron pins used with the surveying chain.
Sisti
ସିସ୍ତି सिस्ती

**ସିସ୍ତୁ**—ପ୍ରାଦେ (ଗଞ୍ଜାମ) ବି (ଇଂ· ସେସ୍ )—ଭୂମିକର; ଖଜଣା—Land cess.
Sistu

**ସିହ୍‌ନିବା**—ପ୍ରାଦେ ( ସମ୍ବଲପୁର ) କ୍ରି—ଜୁନ୍ଦ ଗୁଞ୍ଜି ଭର୍ତ୍ତି କରିବା—To ram in things together into a narrow receptacle.
Sih-nibā

**ସିହଳ**—ଦେ· ବି ( ସଂ· ଶୃଙ୍ଖଳ )—ସିଅଳ ( ଦେଖ )
Sihala
Siala ( See )

**ସିହା**—ବୈଦେ· ବି—୧ । ( ଫା· ସୀହା ) ଜମା ଖରଚ ବହି—1. Account book. [ ଦ୍ର—ଏହି ହିସାବ ବହିରେ ଜମା ଓ ଖରଚ ଲେଖାଯାଏ । ] ୨ । ସିହା; ମୁସଲମାନମାନଙ୍କର ସମ୍ପ୍ରଦାୟବିଶେଷ—2. A sect of Mohommedans; the Sihā. [ ଦ୍ର—ମୁସଲମାନ ଧର୍ମାବଲମ୍ବୀମାନେ ପ୍ରଧାନ ଦୁଇ ସମ୍ପ୍ରଦାୟରେ ବିଭକ୍ତ; ଯଥା—ସିହା ଓ ସୁନ୍ନୀ । ଇସଲାମ ଧର୍ମର ନେତା ବା ଗୁରୁ (ଇମାମ୍) କିଏ, ଏହି ସଂବନ୍ଧରେ ଦୁଇ ସମ୍ପ୍ରଦାୟ ମଧ୍ୟରେ ମତଭେଦ ଅଛି । ସୁନ୍ନୀମାନେ କହନ୍ତି ଯେ, ଯାହାଙ୍କୁ ମୁସଲମାନ୍‌ମାନେ ନେତା ପଦରେ ମନୋନୀତ କରନ୍ତି ସେ 'ଇମାମ୍'; କିନ୍ତୁ ସିହାମାନେ କହନ୍ତି ଯେ, ମହମ୍ମଦଙ୍କ ଶିଷ୍ୟାନୁଶିଷ୍ୟ କାଳକ୍ରମେ 'ଇମାମ୍' ଅଟନ୍ତି । ସିହା ଓ ସୁନ୍ନୀମାନଙ୍କର ଅଇନ୍ ମଧ୍ୟ ଭିନ୍ନ । ସିହାମାନଙ୍କ ଅଇନ୍ କୋରାନ୍ ଓ ଶିଷ୍ୟାନୁଶିଷ୍ୟ କ୍ରମେ ପୁରୁଷପରଂପରା ଚଳିଥିବା ମହମ୍ମଦଙ୍କ ଉପଦେଶ ଉପରେ ପ୍ରତିଷ୍ଠିତ । କିନ୍ତୁ ସୁନ୍ନୀମାନଙ୍କ ଅଇନ ଏହି ଦୁଇ ଭିତ୍ତି, ପଣ୍ଡିତମାନଙ୍କର ଟୀକା ଓ ବ୍ୟକ୍ତିବିଶେଷଙ୍କର ସ୍ୱାଧୀନ ବିଚାର ଉପରେ ପ୍ରତିଷ୍ଠିତ ।

ମହମ୍ମଦୀୟ ହିଜରୀ ସନର ଦ୍ୱିତୀୟ ଶତାବ୍ଦୀରେ ମହମ୍ମଦଙ୍କ ଶିଷ୍ୟାନୁଶିଷ୍ୟକ୍ରମେ ଷଷ୍ଠ ଗ୍ରାମୀୟ ଜଫର୍-ଅଲ୍-ସାଦିକ୍ ସିହା ସମ୍ପ୍ରଦାୟର ପ୍ରତିଷ୍ଠା କରିଥିଲେ ।

ସିହାମାନଙ୍କର ମଧ୍ୟ ଅନେକଗୁଡ଼ିଏ ଉପସମ୍ପ୍ରଦାୟ ଅଛି; ଯଥା—ଅସ୍‌ନା ଅସାରିୟା ବା ଇମାମିୟା (ଏମାନେ ପୁଣି ଦୁଇ ଶ୍ରେଣୀରେ ବିଭକ୍ତ—ଅସୁଲି, ଅଖ୍‌ବାରି), ମୁତାଜାଲି, ଇସ୍‌ମାଇଲିଆ । ବୋମ୍ବେ ପ୍ରଦେଶର 'ଖୋଜା', 'ବୋହ୍ରା' ଅଦିଙ୍କ ଛଡ଼ା ଭାରତର ଅଧିକାଂଶ ମୁସଲମାନ ସୁନ୍ନୀ ସମ୍ପ୍ରଦାୟଭୁକ୍ତ ।

ସିହା ଓ ସୁନ୍ନୀଙ୍କୁ ଚିହ୍ନିବାର ଗୋଟିଏ ସହଜ ଚିହ୍ନ ଏହି ଯେ, ସିହାମାନେ ନମାଜ୍ ପଢ଼ିଲା ବେଳେ ଦୁଇ ହାତକୁ ଦୁଇ କଡ଼ରେ ସିଧା କରି ଓହଳାଇ ରଖନ୍ତି; କିନ୍ତୁ ସୁନ୍ନୀମାନେ ଦୁଇ ହାତକୁ ସାମନା ପାଖରେ ଯୋଡ଼ି କରି ନମାଜ ପଢ଼ନ୍ତି ।

ସିହାମାନେ ମୃତ ବ୍ୟକ୍ତିର ସମତୁଲବର୍ତ୍ତୀ ସଗୋତ୍ର ( agnate, ଯଥା—ପୌତ୍ର ) ଓ ଅସଗୋତ୍ର ( cognate; ଯଥା—ଦୌହିତ୍ର )ମାନଙ୍କ ମଧ୍ୟରେ ସମ୍ପତ୍ତିକୁ ସମାନରୂପେ ବଣ୍ଟନ କରନ୍ତି । କିନ୍ତୁ ସୁନ୍ନୀମାନେ କେବଳ ସଗୋତ୍ର ପୁରୁଷ—ଉତ୍ତରାଧିକାରୀମାନଙ୍କ ମଧ୍ୟରେ ମୃତ ବ୍ୟକ୍ତିର ସମ୍ପତ୍ତି ବଣ୍ଟନ କରନ୍ତି ।

ସିହା ଓ ସୁନ୍ନୀ ଉଭୟଙ୍କ ମଧ୍ୟରେ ଏ ନିୟମ କେବଳ କୋରାନୋକ୍ତ ଉତ୍ତରାଧିକାରୀମାନଙ୍କ ପ୍ରତି ଖଟେ ନାହିଁ; ଯଥା—ମୃତ ବ୍ୟକ୍ତିର ପିତା, ମାତା, ପୁତ୍ର, କନ୍ୟା, ସ୍ୱାମୀ ବା ସ୍ତ୍ରୀ । ] ଦେ· ବି ( ସଂ· ଶିଖା )—ଅଗ୍ରଭାଗ—Top.
Sihā
ସେହା सेहा
ସିୟା शिया
ଶିଖ शिखा

**ସିହାଇ**—ବୈଦେ· ବି ( ଫା· ସିହାଇ )—ସ୍ୟାହି; ଲେଖିବାର କାଳି; ମସି—Writing ink.
Sihāi
ସେହାଇ स्याही

**ସିହାଇ ଘଡ଼ି**—ଦେ· ବି—ମସ୍ୟାଧାର; କାଳି ଘଡ଼ି; ଦୁଆତ—Inkpot.
Sihāi ghardi
ସେହାଇ ଦୋୟାତ दवात
( ସିହାଇ ଦୁଅତ—ଅନ୍ୟରୂପ )

**ସିହା ଉଆରିଜା**—ବୈଦେ· ବି ( ଜମିଦାରୀ ସେରେସ୍ତା )—ଯେଉଁ ସିହାରେ ପଦ୍ଧ ବର୍ଷ ଶ୍ରେଣୀର ଜମା ଓ ଖରଚମାନ ପୃଥକ୍ ପୃଥକ୍ ଭାବରେ ଲେଖାଯାଏ—Account
Sihā uārijā
ସିହା ଓୟାରିଜା

ସେ ବାରିଜା book showing receipts and expe-
(ସିହା ବାଇଜା—ଅନ୍ୟରୂପ) nditures entered under
different items or headings.

**ସିହା ଉଆସିଲ୍(ଲି) ବାକି**—ଦେ. ବ (ଜମିଦାରୀ ସିରସ୍ତା)—ଜମି-
Sihā uāsil(li) bāki ଦାରୀ କାଗଜବିଶେଷ—A Zemi-
সিহা ওয়াসিল বাকি ndary account showing the
हा वसूल बाँकी current year's account of
(ସିହା ଵାସିଲ୍[ଲି] ବାକି—ଅନ୍ୟରୂପ) every tenant and
respective due after deducting the
payments made by the tenant. [ ପ୍ର—
ବର୍ଷକ ମଧ୍ୟରେ ପ୍ରଜା ଯେତେ ଖଜଣା ଦେଇଥାଏ, ଏଥିରେ
ତାହା ଲେଖା ଯାଇ ଗତ ବର୍ଷର ହିସାବ ଗଡ଼ାଣ କରାଯାଇ
ସନ ଅନ୍ତରକୁ ଉକ୍ତ ପ୍ରଜା ଉପରେ କେତେ ବାକି ରହିଲି,
ତାହା ଦେଖାଇ ଦିଆଯାଏ । ]

**ସିହାଁ**—ଦେ. ବ—ସିଆଁ (ଦେଖ)—
Sihāñ Siāñ (See)

**ସିହାଁଇ(ଇଁ)ବା**—ଦେ. କି—ସିଆଁଇବା (ଦେଖ)
Sihāñi(iñ)bā Siāñibā (See)

**ସିହା କରିବା**—ଦେ. କ୍ରି—୧ । ହିସାବ ବହିରେ ଜମା ଖରଚ ଲେଖିବା-
Sihā karibā 1. To enter receipts and expenses
সিহা করা in the account book. ୨ । ଜମା
सेहा करना ଧନକୁ ହିସାବରେ ଲେଖିବା—2. To enter a
(ସିହା ଚଢ଼ା[ଢ଼େ]ଇବା—ଅନ୍ୟରୂପ) receipt in the
account book

**ସି(ସିଂ, ସିଁ)ହାଣ(ଣା)** (ଇତ୍ୟାଦି)—ଦେ. ବିଣ. ପୁଂ ଓ ସ୍ତ୍ରୀ (ସଂ
Si(siṁ, siñ)hāṇa(ṇā) ସନ୍ଧାନ)—୧ । ସିଆଣ(ଣା) (ଦେଖ)—
সয়ান सयाना 1. Siāṇa(ṇā) (See) [ ପ୍ର—ସିହାଣ
ବସ୍ତୁରେ ମୋତେ ନ କରିବ ଦୟା—ଭଞ୍ଜ· କୋଟିବ୍ରହ୍ମାଣ୍ଡ
ସୁନ୍ଦରୀ ।] ୨ । ଶ୍ରେଷ୍ଠ—2. Best. [ପ୍ର—ଯୁଦ୍ଧରେ
ଖେଳ ହୋଇ ବ୍ରହ୍ମାଣ୍ଡ ସିହାଣ । ରଖିଲେ ମାନ ପାଣ୍ଡ୍ୟ
ନୃପତିଙ୍କ ପ୍ରାଣ—କୃଷ୍ଣସିଂହ. ମହାଭାରତ· କର୍ଣ୍ଣ । ]

**ସି(ସିଂ, ସିଁ)ହାଣିଆ(ଆଁ)** (ଇତ୍ୟାଦି)—ଦେ. ବିଣ. ପୁଂ ଓ ସ୍ତ୍ରୀ—
Si(siṁ; siñ)hāṇiā(āñ) (etc) ସିଆଣ ଇତ୍ୟାଦି (ଦେଖ)
Siāṇa etc (See). [ ପ୍ର—ସେ ବ୍ରାହ୍ମଣ ଅଟନ୍ତି
ଅଟେ ସିହାଣିଆଁ—କୃଷ୍ଣସିଂହ. ମହାଭାରତ ଆଦି । ]

**ସିହାଣୀ**—ଦେ· ବିଣ· ସ୍ତ୍ରୀ—'ସିହାଣ'ର ସ୍ତ୍ରୀଲିଙ୍ଗ—
Sihāṇī Feminine of 'Sihāṇa'.
(ପ୍ର—ଅସତର୍କେ କେବେ ଦେଖିଲେ ସିହାଣୀ—ଚାତୁରୀ
ଘଗ-ଭରଳ । ସୁଧାନାଥ· ଜଯାଲିଦେଶସି ।)

**ସିହାଭୁକ୍ତ**—ଦେ. ବିଣ—ସିହାରେ ଲେଖା ହୋଇଥିବା—
Sihābhukta Entered in the accounts.
সেহা ভুক্ত सेहाभुगतान

**ସିହାର(ରା) ହାର**—ଦେ. ବ—ଶିଂଘଡ଼ା ହାର (ଦେଖ)
Sihāra(rā) hāra Siṁghaṛā hāra. (See)

**ସିହୁଣ୍ଡ**—ସ. ବ—ସ୍ନୁହୀ ବୃକ୍ଷ (ଶବ୍ଦ ରତ୍ନାବଳୀ); ସିଜୁ (ଦେଖ)
Sihunḍa Sijhu. (See)

**ସିହ୍ନା**—ଗ୍ରା· ଅ—ସିନା (ଦେଖ)—Sinā. (See) (ପ୍ର—ଲୁଡ଼ୁ ଲୁଡ଼ୁ
Sihnā ଲୁଡ଼ୁ ସିହ୍ନା ଅଛଇ ସେ ସୁଅ । ପ୍ରାଚୀ. ବୃନ୍ଦାବନରୂପଣ
ଗୀତା ।)

**ସିହ୍ଲ**—ସ. ବ (ସିହ୍, ଧାତୁ=ସ୍ନିଗ୍ଧ ହେବା + କର୍ତ୍ତୃ· ଲ, କ୍ରାକଚ )
Sihla ୧ । ଧୂପରେ ବ୍ୟବହୃତ ଗନ୍ଧଦ୍ରବ୍ୟ ବିଶେଷ
[ସିହ୍ଲକ—ଅନ୍ୟରୂପ] (ଶବ୍ଦ ରତ୍ନାବଳୀ); ଲୋବାନ; ଏକପ୍ରକାର
সিহ্ল ଧୂଣା—1. Olibanum. ୨ । ଶିଲ୍ହକ—2. Liquid
शिलारस amber.
ଫା. ଶଲ୍ଲରସ, ଅ. ମୋଅଇଏ ସାଇଲ୍
ଅନ୍ୟ ସଂସ୍କୃତ ନାମ—ତୁରୁଷ୍କ, ପିଣ୍ଡକ, ଯାବନ, ପିଣ୍ୟାକ, କପିତୈଳ,
କପିବାତକ, କପିଜୈଳ, ତୈଳାଖ୍ୟ, ଯାବ,
ଯାବକ, ସହ୍ଲଗାନ୍ଧକ, ଶିଲ୍ହକ, ପିଣ୍ଡକ,
ତୈଳପର୍ଣ୍ଣୀ, ବୃକଧୂପ, କୃତ୍ରିଧୂପ ।

**ସିହ୍ଲକୀ**—ସ. ବ—ଶଲ୍ଲକୀ (ଦେଖ)
Sihlakī Sallkai. (See)
[ସିହ୍ଲଭୂମିକା—ଅନ୍ୟରୂପ] शलई, शलाई सालई, सालगा

**ସିହ୍ଲା(ଇତ୍ୟାଦି)**—ବୈଦେ. ବ—ସିଲ୍ଲ ଇତ୍ୟାଦି (ଦେଖ)
Sihlā (etc) Silā. etc (See)

**ସୀଉକାର**—ଗ୍ରା· ବ (ସ· ସ୍ୱୀକାର)—୧ । ସ୍ୱୀକାର; ସମ୍ମତି—
Siukāra 1. Consent. [ ପ୍ର—ତୁମ୍ଭର ସୀଉକାର ହେଲେ
স্বীকার ସିନା ଏହା । କୃଷ୍ଣସିଂହ· ମହାଭାରତ ବନ ।] ୨ । କରଣ
स्वीकार ସମାଜରେ ବିବାହ ପୂର୍ବରୁ ବରକନ୍ୟାଙ୍କ ସମ୍ବନ୍ଧରେ ଉଭୟ
ପକ୍ଷ .. ସ ଉଦ୍ଦେଶ୍ୟରେ ନିର୍ବନ୍ଧ ଓ ଉତ୍ସବ—2. The
ceremony of formal betrothal before
marriage (amongst the Karaṇas of
Orissa). ୩ । କରଣ ସମାଜର 'ସୀଉକାର' ଉତ୍ସବରେ
କନ୍ୟାଘରୁ ବରଘରକୁ ପଠାଯିବା ଭେଟି—3. Send-
ing of presents from the betrothed
bride to the bridegroom.

**ସୀଉକାର କରିବା**—ଗ୍ରା. କି—ସ୍ୱୀକାର କରିବା (ଦେଖ)
Siukāra karibā Swikāra karibā. (See)
স্বীকার করা स्वीकार करना

**ସୀଉକାର ସନମତି**—ଗ୍ରା. ବ (ଏକପଦ)—କରଣ ସମାଜରେ ବର ଓ
Siukāra sanamati କନ୍ୟାଙ୍କର ବିବାହ ବିଷୟରେ ନିର୍ବନ୍ଧ
স্বীকার সম্মতি ହେବା ପରେ ବର ଘର ଓ କନ୍ୟା ଘର ମଧ୍ୟରେ
स्वीकार सम्मति ଭେଟିଭାଟ ହେବା ଉତ୍ସବ—Mutual
exchange of presents between the
betrothed bride and the bridegroom.

**ସୀଉକାରିଆ**—ଦେ. ବ—କରଣ କୁଳରେ ବିବାହ ବିଷୟରେ ମଧ୍ୟସ୍ଥ
Siukāriā ହେବା ଲୋକ—The negotiator or middle-
ঘটক man in a marriage in the 'Karaṇa'
अगुआ society. (ପ୍ର—ବରକୁ କନ୍ୟା, କି କନ୍ୟାକୁ ବର

ସାଜଲ କର ସାଇଲଣି ? ସୀକରାରଥ ସବୁ ପଦ୍ମେ ଯିବେ ପସ୍ । ଉକାଶଚରଣ ଚୌଧୁରୀ ।)

**ସୀକ୍ (ଧାତୁ)**—ସ—୧ । ସେଚନ କରିବା—1. To sprinkle.
Sīk (root) ୨ । ସେକିବା —2. To foment.

**ସୀକର**—ସ. ବି ('ଶୀକର'ର ଅନ୍ୟରୂପ; ସୀକ୍. ଧାତୁ+କର୍ମ. ଅର)—
Sīkara ୧ । ସୂକ୍ଷ୍ମ ଜଳବିନ୍ଦୁ—1. Spray; minute water-particles ୨ । ବାୟୁପ୍ରେରିତ ସୂକ୍ଷ୍ମ ଜଳକଣା—2. Minute particles or spray of water driven by the wind. ୩ । (+ଲଳିଅର) ଝିପିଝିପି ବୃଷ୍ଟି—3. Drizzle; rain in minute drops ୪ । ବାୟୁ—4. Air; wind.

**ସୀକର ଶୀତ**—ସ. ବିଣ ( ଶସ୍ୟା ଉତ୍ )—୧ । ଜଳକଣା ଦ୍ୱାରା
Sīkara śita ଶୀତଳ—1. Cooled with water spray. (ଉ—କୁଞ୍ଜର ବଧୂ ମୋହ ବଳାଶ ଅଶେ, ସୀକର-ଶୀତ ବାୟୁ ସେବିଲେ ପାଶେ । ମଧୁସୂଦନ. ସୀତା-ବନବାସ [କବିତାବଳୀ] ।) ୨ । ଜଳକଣା ପରି ଶୀତଳ—2. Cool like spray.

**ସୀକାର**—ପ୍ରାଦେ (ଗଡ଼ଜାତ) ବି—୧ । ସ୍ୱୀକାର- 1. Promise;
Sīkāra agreement. ୨ । ମାଂସ—2. Meat. ୩ । ପାରଧି—3. Hunting.

**ସୀ(ତ୍)ତ**—ସ. ବି (ଧ୍ୱନ୍ୟନୁକରଣ)—ଜିହ୍ୱା ଓ ଦନ୍ତ ଦ୍ୱାରା ଜାତ
Sīt(ta) ସୀତ୍ ଧ୍ୱନି—Whistling sound produced by the tongue and teeth.

**ସୀତ୍(ତ)କାର**—ସ. ବି (ସୀତ୍, ସୀତ=ଅବ୍ୟକ୍ତ ମଧୁର ଧ୍ୱନି+କୃ,
Sīt-(ta)kāra ଧାତୁ+ଭାବ. ଅ)—ଅବ୍ୟକ୍ତ ସୁଖଶବ୍ଦ ବିଶେଷ; [ସୀତ୍କୃତ(ତି)—ଅନ୍ୟରୂପ] କାମିନୀମାନଙ୍କର ଜିହ୍ୱା ଓ ଦନ୍ତ ସାହାଯ୍ୟରେ ନିର୍ଗତ 'ସୀତ୍'ରୂପ ଅବ୍ୟକ୍ତ ଶବ୍ଦ; ଉତ୍ତମା ସ୍ତ୍ରୀବର ରମଣାଦି କାଳରେ ଅନୁରାଗଜନିତ ସୁଖବ୍ୟଞ୍ଜକ ଅସ୍ଫୁଟ ମଧୁର ଶବ୍ଦ (ହେମଚନ୍ଦ୍ର)—Sweet whistling sound heard from the mouth of amorous women during orgasm in coition.

**ସୀତ୍କୃତ**—ସ. ବିଣ—କୃତ ସୀତ୍କାର—Making a whistling
Sīt-kṛuta amorous sound during coition.
ସଂ. ବି—ସୀତ୍କାର (ଦେଖ)—Sīt-kāra. (See)
(ସୀତକୃତ- ଅନ୍ୟ ବି, ରୂପ)

**ସୀତ(ତ୍ୟ)ୟା**—ଗ୍ରା. ବି (ଅଶୁଦ୍ଧ ଉଚ୍ଚାରଣ)—ସୀତା ଦେବୀ; ରାମପତ୍ନୀ—
Sīta(tya)yā Sītā; the wife of Rāma. ( ଉ—ସୀତା ଅଶ୍ରମ ଭର ଜାଉଥିଲା, ଜନ୍ମ ସୀତ୍ୟା ରାମାଶ୍ରମ । ଜଗନ୍ନାଥ ସୀତିୟା ଗ୍ରନ୍ଥବଳୀ ।) ଦେ. ବି—'ସୀତା'ଙ୍କ ଡାକ ନାମ—Nickname of 'Sītā'.

**ସୀତ(ତ୍ୟ)ୟା ଠାକୁରାଣୀ, ସୀତ(ତ୍ୟ)ୟା ଦେବୀ, ସୀତ୍ୟା, ସୀତ୍ୟା ଦେବୀ, ସୀତ୍ୟା ଠାକୁରାଣୀ** }—ଅନ୍ୟରୂପ

**ସୀତା**—ସ. ବି—[ସି ଧାତୁ=(ବନ୍ଧ) ଖନନ କରିବା+କର୍ମ. କ୍ତ, ସିତ +ଅ, ଆକାରନ୍ତ); ଅନ୍ୟରୂପ ଶୀତା]—୧ । ଲଙ୍ଗଳ ପଦ୍ଧତି; ଲଙ୍ଗଳ ଦ୍ୱାରା ଭୂମିରେ ହୋଇ ହୋଇଥିବା ଗାର; ଲଙ୍ଗଳଚଷିତ ଗଭୀର ରେଖା—1. Furrow made by the plough. ୨ । (+ନଳିକ) ସ୍ୱର୍ଗଗଙ୍ଗା; ମନ୍ଦାକିନୀର ଶାଖା ବିଶେଷ—2. Name of a branch of the Ganges said to flow in the heaven. ୩ । ଲକ୍ଷ୍ମୀ (ଧ୍ୱନି ମଞ୍ଜରୀ)—3. The Goddess Lakshmī. ୪ । ଉମା; ପାର୍ବତୀ(ଧ୍ୱନିମଞ୍ଜରୀ)—4. Pārbatī. ୫ । ଶସ୍ୟାଧି ଦେବତା (ଧ୍ୱନିମଞ୍ଜରୀ)—5. The Deity presiding over the corn. ୬ । ମଦ୍ୟ ( ରାଜନିର୍ଘଣ୍ଟ )—6. Wine. ୭ । ଗଙ୍ଗା ସ୍ରୋତ (ହେମମାଳା)—7. The current of the river Ganges. ୮ । (ନାମ) (ଅନ୍ୟ ସଂ. ନାମ—ବୈଦେହୀ; ମୈଥିଳୀ (ସୀତା ବା 'ଶୀତାମୁଖ' ବା ଜାନକୀ, ଧରଣୀସୁତା, ଭୂମିସମ୍ଭବା ।] ଲଙ୍ଗଳପଦ୍ଧତିରୁ ମିଳିଥିବାରୁ ଏହି ନାମ ହୋଇଅଛି) ଜନକରାଜନନ୍ଦିନୀ ରାମଚନ୍ଦ୍ରଙ୍କ ପତ୍ନୀ—8. The wife of Rāmachandra. [ଉ—ମିଥିଳାଧିପ ଜନକ ଲଙ୍ଗଳଦ୍ୱାରା ଯଜ୍ଞଭୂମି ଶୁଦ୍ଧ କରିବା ସମୟରେ ଲଙ୍ଗଳପଦ୍ଧତିରୁ ଗୋଟିଏ ଶିଶୁକନ୍ୟାଙ୍କୁ ବୈଶାଖ ଶୁକ୍ଳ ନବମୀ (ରାମନବମୀ) ମଙ୍ଗଳବାର ମଧ୍ୟାହ୍ନରେ ପାଇଥିଲେ ଏବଂ 'ସୀତା'ରୁ ଏହାଙ୍କୁ ପାଇଥିବାରୁ ଏହାଙ୍କ ନାମ 'ସୀତା' ରଖିଲେ । ସୀତା ଅଯୋନିସମ୍ଭବା ବୋଲି ଖ୍ୟାତା । ସୀତା ଯୁବତୀ ହେବାରୁ ଜନକ ଗୋଟିଏ ଶିବଧନୁ ରଖି ଏହି ପଣ କଲେ ଯେ, ଯେଉଁ ବ୍ୟକ୍ତି ଉକ୍ତ ଧନୁକୁ ଆକର୍ଷଣ କରି ଅଧିଜ୍ୟ କରିବେ, ସେ ତାଙ୍କ ଉକ୍ତ କନ୍ୟା ସମର୍ପଣ କରିବେ । ଏହି ପଣ ଶୁଣି ନାନା ଦେଶରୁ ରାଜାଗଣ ଉପସ୍ଥିତ ହେଲେ; କିନ୍ତୁ ଉକ୍ତ ଧନୁକୁ ଆକର୍ଷଣ କରିବା କଥା ଦୂରରେ ଥାଉ, କେହି ତାକୁ ଭୂମିରୁ ଉଠାଇ ପାରିଲେ ନାହିଁ । ଏହି ସମୟରେ ବିଶ୍ୱାମିତ୍ର ଋଷି ତାଙ୍କ ଆଶ୍ରମରୁ ଅସୁରମାନଙ୍କୁ ଦୂର କରିବା ପାଇଁ ଦଶରଥଙ୍କ ନିକଟରୁ ରାମଚନ୍ଦ୍ରଙ୍କୁ ଓ ଲକ୍ଷ୍ମଣଙ୍କୁ ସଙ୍ଗରେ ଆଣିଥିଲେ । ସେହି ଧନୁର୍ଭଙ୍ଗ ସଭା ଦେଖିବା ପାଇଁ ବିଶ୍ୱାମିତ୍ର କୁମାରଦ୍ୱୟଙ୍କୁ ସଙ୍ଗରେ ନେଇ ମିଥିଳାକୁ ଅସିଥିଲେ । ସମବେତ ରାଜନ୍ୟବର୍ଗ ସେ ଧନୁକୁ ଉଠାଇ ନ ପାରିବାରୁ ରାମଚନ୍ଦ୍ର ଅନ୍ତି ଲଘୁଭାବରେ ଉପସ୍ଥିତ ହୋଇ ଧନୁକୁ ଟେକି ସେଥିରେ ଗୁଣ ଦେବା ପାଇଁ ଆକର୍ଷଣ କରୁ କରୁ ଧନୁଟି ଦୁଇ ଖଣ୍ଡ ହୋଇ ଭାଙ୍ଗିଗଲା । ଜନକ ଏଥିରେ ସନ୍ତୁଷ୍ଟ ହୋଇ ବରେଣ୍ୟ ତାଙ୍କ ସୀତାଙ୍କ ରାମଚନ୍ଦ୍ରଙ୍କ ହସ୍ତରେ ଏବଂ ତାଙ୍କର ଅନ୍ୟ କନ୍ୟା ଉର୍ମିଳା ଓ ଭ୍ରାତୃଷ୍ପୁତ୍ରୀ ମାଣ୍ଡବୀ, ଶ୍ରୁତକୀର୍ତ୍ତିଙ୍କୁ ଯଥାକ୍ରମେ ଲକ୍ଷ୍ମଣ, ଭରତ ଓ ଶତ୍ରୁଘ୍ନଙ୍କୁ ସମର୍ପଣ କଲେ । ସୀତାଙ୍କୁ ନେଇ ରାମଚନ୍ଦ୍ର ମିଥିଳାରୁ ସହିତ ଅଯୋଧ୍ୟାକୁ ଫେରିଲା ସମୟରେ ବାଟରେ ପରଶୁରାମ ତାଙ୍କୁ ବାଧା ଦେବାକୁ ଚେଷ୍ଟା କରି ରାମଚନ୍ଦ୍ରଙ୍କ ଦ୍ୱାରା ପରାଜିତ ହୋଇ ସେଠାରୁ ପ୍ରସ୍ଥାନ କଲେ

ରାମଚନ୍ଦ୍ର ରାଜ୍ୟକୁ ଫେରିଆସି ସୀତାଙ୍କ ସହିତ ସୁଖରେ ରହିଲେ । ସୀତା ନିଜ ଗୁଣରେ ଶାଶୁ, ଶ୍ୱଶୁର, ସ୍ୱାମୀ ଓ ରାଜ୍ୟର ସମସ୍ତଙ୍କୁ ମୁଗ୍ଧ କଲେ । ଏହି ସମୟରେ ଦଶରଥ ବୃଦ୍ଧ ହେବାରୁ ରାମଚନ୍ଦ୍ରଙ୍କୁ 'ଯୌବରାଜ୍ୟ' ଦେବାପାଇଁ ଘୋଷଣା କରି ତହିଁର ସମସ୍ତ ଆୟୋଜନ କଲେ । ଉକ୍ତ ଉତ୍ସବର ପୂର୍ବଦିନ ରାତିରେ ମନ୍ଥରାନାମ୍ନୀ ଦାସୀର ପ୍ରରୋଚନାରେ ରାମଚନ୍ଦ୍ରଙ୍କ ବିମାତା ଭରତଜନନୀ କୈକେୟୀ ଦଶରଥଙ୍କୁ ଅଡ଼ଳରେ ପକାଇ ପୂର୍ବଅଙ୍ଗୀକୃତ ଦୁଇଟି ବର ଦେବା ପାଇଁ ସତ୍ୟ କରାଇ ନେଲେ ଯେ, ରାମଚନ୍ଦ୍ର ୧୨ ବର୍ଷକାଳ ବନବାସୀ ହେବେ ଓ ଭରତ ରାଜା ହେବେ । ରାମଚନ୍ଦ୍ର ପିତୃସତ୍ୟ ପାଳନାର୍ଥ ବନକୁ ବାହାରିଲେ ଏବଂ ପତିବ୍ରତା ସୀତା ଓ ଅଗ୍ରଜ ଆଜ୍ଞାବହ ଲକ୍ଷ୍ମଣ ମଧ୍ୟ ତାଙ୍କ ସହଗାମୀ ହେଲେ । ରାମଚନ୍ଦ୍ରଙ୍କ ବନଗମନରେ ଶୋକଗ୍ରସ୍ତ ହୋଇ ଦଶରଥ ପ୍ରାଣତ୍ୟାଗ କଲେ । ତେଣେ ରାମ, ସୀତା ଓ ଲକ୍ଷ୍ମଣ ୧୨ ବର୍ଷ ବନରେ ତପସ୍ୱିବେଶରେ ବନ୍ୟ ଫଳମୂଳ ଖାଇ କୁଟୀରରେ ବାସ କରି ରହିଲେ । ଏହି ସମୟରେ ରାକ୍ଷସୀ ସୂର୍ପଣଖାର ପ୍ରରୋଚନାରେ ଲଙ୍କାଧିପତି ରାବଣ ସୀତାଙ୍କୁ ଛଳବଳ ପ୍ରୟୋଗପୂର୍ବକ ରଥରେ ବସାଇ ଲଙ୍କାକୁ ନେଇଗଲେ । ରାମଚନ୍ଦ୍ର ସୀତାଙ୍କୁ ନ ଦେଖି ଉନ୍ମତ୍ତପରି ହେଲେ ଏବଂ କିଷ୍କିନ୍ଧ୍ୟାରେ ବାନରରାଜ ସୁଗ୍ରୀବଙ୍କ ସଙ୍ଗେ ମିତ୍ରତା ସ୍ଥାପନ କରି ହନୁମାନଙ୍କୁ ପଠାଇ ସେ ତାଙ୍କୁ ରାବଣ ନେଇ ଲଙ୍କାଗଡ଼ରେ ଅଶୋକବନରେ ବନ୍ଦିନୀ କରି ରଖିଥିବା ଜାଣିଲେ । ତତ୍ପରେ ରାମଚନ୍ଦ୍ର ସୁଗ୍ରୀବଙ୍କ କପିସେନା ସହ ଲଙ୍କାକୁ ଯୁଦ୍ଧଯାତ୍ରା କଲେ ଏବଂ ସମୁଦ୍ରରେ ସେତୁବନ୍ଧ ବନ୍ଧାଇ ଲଙ୍କାରେ ପଶି ରାବଣଙ୍କୁ ଯୁଦ୍ଧରେ ନିହତ କରି ସୀତାଙ୍କ ଉଦ୍ଧାର କଲେ । ସୀତା ରାବଣକର୍ତ୍ତୃକ ନାନାପ୍ରକାରେ ପ୍ରଲୋଭିତା ହୋଇଥିଲେ ମଧ୍ୟ ନିଜ ସତୀତ୍ୱକୁ ଅକ୍ଷୁଣ୍ଣ ରଖି ପାରିଥିଲେ । ତଥାପି ଜନାପବାଦ ଆଶଙ୍କାରେ ରାମଚନ୍ଦ୍ର ଲଙ୍କାରେ ତାଙ୍କୁ ଅଗ୍ନିପରୀକ୍ଷା କରାଇବା ପରେ ଗ୍ରହଣ କଲେ ଓ ତାହା ପରେ ସ୍ୱଦେଶକୁ ଫେରିଲେ । ସେତେବେଳକୁ ବନବାସର ୧୨ ବର୍ଷ ଅତୀତ ହୋଇଥିଲା । ଅଯୋଧ୍ୟାରେ ସୀତା, ରାମ ଦୁହେଁ ସୁଖରେ କିଛିକାଳ ରହିବା ପରେ ସୀତା ଅନ୍ତଃସତ୍ତ୍ୱା ହେଲେ ଏବଂ ନିଜର ତପୋବନ ଦର୍ଶନଲାଳସା ସ୍ୱାମୀଙ୍କ ନିକଟରେ ପ୍ରକାଶ କଲେ । ଇତ୍ୟବସରରେ ରାବଣ ଦ୍ୱାରା ସୀତା ଅପହୃତା ହୋଇ ସେଠାରେ କେତେକାଳ ବାସ କରିଥିବା ଯୋଗୁଁ ତାଙ୍କ ଆଚରଣରେ କଳଙ୍କ ଲାଗିବାର ପ୍ରବାଦ ଲୋକମୁଖରେ ପ୍ରଚରିତ ହେବା ଶୁଣି ରାମଚନ୍ଦ୍ର ଜନାପବାଦକୁ ସମ୍ମାନ ପ୍ରଦର୍ଶନ କରି ପ୍ରାଣାଧିକା ସ୍ତ୍ରୀ ସୀତାଙ୍କୁ ବନଦର୍ଶନ ଛଳନାରେ ନିର୍ବାସିତା କରିବାକୁ ସ୍ଥିର କଲେ । ଶେଷରେ ଅଗ୍ରଜଙ୍କ ଆଦେଶରେ ଅନୁଜ ଲକ୍ଷ୍ମଣ ସୀତାଙ୍କୁ ନେଇ ବାଲ୍ମୀକି ମୁନିଙ୍କ ଆଶ୍ରମ ନିକଟରେ ଅରଣ୍ୟରେ [illegible] ଫେରିଆସିଲେ । ସୀତା ସେହିଠାରେ ନିଜର ଦୁର୍ଭାଗ୍ୟ କଥା ଜାଣି ପାରି ବହୁ ଶୋକ କରି ଶେଷରେ ବାଲ୍ମୀକିଙ୍କଠାରୁ ସାନ୍ତ୍ୱନା ପାଇ ତାଙ୍କ ଆଶ୍ରମରେ ଯାଇ ଭାଗ୍ୟ ଆଦରି ରହିଲେ । ସେହିଠାରେ ତାଙ୍କର ଯମଜ ପୁତ୍ର କୁଶ ଓ ଲବ ଜନ୍ମ ହେଲେ । ସେମାନେ ସେହି ଆଶ୍ରମରେ ବିଦ୍ୟା ଓ ଧନୁର୍ବେଦ ଶିକ୍ଷା କଲେ ଏବଂ ବାଲ୍ମୀକି ସ୍ୱରଚିତ ରାମାୟଣ କାବ୍ୟ କୁମାରଦ୍ୱୟଙ୍କୁ କଣ୍ଠସ୍ଥ କରାଇଲେ । ଅନନ୍ତର ରାମଚନ୍ଦ୍ରଙ୍କ ଅଶ୍ୱମେଧ ଯଜ୍ଞାନୁଷ୍ଠାନକୁ ନିମନ୍ତ୍ରିତ ମହର୍ଷି ବାଲ୍ମୀକିଙ୍କ ସଙ୍ଗେ ଆସିଥିବା ଉକ୍ତ କୁମାରଦ୍ୱୟ ସଭାସ୍ଥଳରେ ରାମାୟଣ ଆବୃତ୍ତି କଲେ । ଏହା ଶୁଣି ରାମଚନ୍ଦ୍ର ଅତ୍ୟନ୍ତ ମୁଗ୍ଧ ହେଲେ ଏବଂ ଋଷିଙ୍କ ମୁଖରୁ ସେ ଦୁଇ କୁମାରଙ୍କ ପରିଚୟ ପାଇ ଓ ସୀତାଙ୍କ ସତୀତ୍ୱ ବିଷୟରେ ମଧ୍ୟ ମୁନିଙ୍କଠାରୁ ଦୃଢ଼ ଉକ୍ତି ଶ୍ରବଣ କରି ସୀତାଙ୍କୁ ପୁନର୍ଗ୍ରହଣ କରିବା ପାଇଁ ସଂକଳ୍ପ କଲେ । ତତ୍ପରେ ରାମଚନ୍ଦ୍ର ସୀତାଙ୍କୁ ଅଯୋଧ୍ୟାକୁ ଆଣାଇଲେ; କିନ୍ତୁ ପ୍ରଜାମାନଙ୍କ ମନୋରଞ୍ଜନାର୍ଥ ତାଙ୍କୁ ପୁଣି ଥରେ ଅଗ୍ନିପରୀକ୍ଷା କରାଇବାକୁ ପ୍ରସ୍ତାବ କରିବାରୁ ସୀତା ତାଙ୍କ ମାତା ବସୁନ୍ଧରାଙ୍କୁ କରୁଣ ସ୍ୱରରେ ପ୍ରାର୍ଥନା କଲେ, "ମା ! ତୁ ଏହିକ୍ଷଣି ଦ୍ୱିଧା ହୋଇଯାଇ ତୋ କନ୍ୟାକୁ କୋଳରେ ସ୍ଥାନ ଦେ ।" ଏହା କହିବା ମାତ୍ରେ ପୃଥିବୀପୃଷ୍ଠ ଫାଟି ଗଲା ଓ ସୀତା ତନ୍ମଧ୍ୟରେ ପ୍ରବେଶ କରି ଲୋକଲୋଚନର ଅନ୍ତର୍ହିତା ହୋଇଗଲେ ।

ସୀତାଙ୍କ ସତୀତ୍ୱ ଓ ପତିସେବା ଆଦି ଗୁଣ ଆଜି ପର୍ଯ୍ୟନ୍ତ ଭାରତ ଲଳନାଙ୍କର ଚରମ ଆଦର୍ଶରୂପେ ପୂଜିତ ହୋଇ ଆସୁଅଛି ।

ସୀତା ଦୁର୍ଗାଙ୍କର ଅବତାର ବୋଲି ମାର୍କଣ୍ଡେୟ ପୁରାଣାନ୍ତର୍ଗତ 'ଚଣ୍ଡୀ'ରେ ବର୍ଣ୍ଣିତ ହୋଇଅଛି ।] ଦେ· ବି—
सीताभोग ୧ । ସୀତାଭୋଗ (ଦେଖ)—1. Sītā bhoga.
सीताभोग (See) ୨ । ଶାକର—2. Molasses (ଉ—
सीता ରେ ରାମା । ସୀତା ମାଧୁର୍ଯ୍ୟ ପରି ସୁଷମ । ଉଞ୍ଜ. କୋଟିବ୍ରହ୍ମାଣ୍ଡ
सीतिया ସୁନ୍ଦରୀ ।) ୩ । ସ୍ତ୍ରୀଲୋକଙ୍କୁ ଦିଆଯିବା ନାମ—3. A name given to females.

ସୀତା କାନ୍ତ(ନାଥ)—ସ· ଦ୍ୱି· ପୁ° ( ୬ଷ୍ଠୀ ତତ୍ )—ରାମଚନ୍ଦ୍ର—
Sītākānta(nātha) सीताकान्त सीताकान्त Rāma chandra. ଦେ· ବି· ପୁ°—ଲୋକଙ୍କୁ ପ୍ରଦତ୍ତ ନାମ—
A name given to males.

ସୀତା କୁଣ୍ଡ—ସ. ବି—ବିହାରର ମୁଙ୍ଗେର ଅନ୍ତର୍ଗତ ଉଷ୍ଣ ପ୍ରସ୍ରବଣ
Sītā kuṇḍa ବିଶେଷ—Name of a hotspring in Monghyr in Bihār. [ଦ୍ର—ଏହି ସ୍ଥାନଟି ହିନ୍ଦୁମାନଙ୍କର ଗୋଟିଏ ପ୍ରଧାନ ତୀର୍ଥ ଅଟେ ।]

ସୀତା ଜନ୍ମବ୍ରତ—ସଂ. ବି—ବୈଶାଖ ଶୁକ୍ଳ ନବମୀ [illegible] ସୀତାଙ୍କର
Sītā janmabrata ପୂଜା ଓ ବ୍ରତ—A festival of
(ସୀତାବ୍ରତ—ଅନାବୃଷ୍ଟି) worshipping Sītā on the

Rāma nabamī day. [ଦ୍ର—ବୈଶାଖ ଶୁକ୍ଳନବମୀ ଦିନ ଲାଙ୍ଗଳ ପଦ୍ଧତିରୁ ସୀତାଙ୍କୁ ରାଜା ଜନକ ପ୍ରାପ୍ତ ହୋଇ ଥିବାରୁ ଉକ୍ତ ଦିନ ଏହି ବ୍ରତଟି ହୁଏ ।]

ସୀତା ଦେବୀ—ସଂ. ବି (ଦେବୀ ଋପିଣୀ ସୀତା)—ରାମଚନ୍ଦ୍ରଙ୍କ ପତ୍ନୀ—
Sītā debī — The wife of Rāmachandra.

ସୀତା ନବମୀ—ସଂ. ବି—ସୀତା ଜନ୍ମବ୍ରତ (ଦେଖ)
Sītā nabamī — Sītā janmabrata, (See)

ସୀତା ପତି—ସଂ. ବି ( ୬ଷ୍ଠୀତତ୍ )—ରାମଚନ୍ଦ୍ର—
Sitāpati — Rāma chandra,

ସୀତା ପୁର—ଦେ. ବି ( ନାମ )—ଯୁକ୍ତପ୍ରଦେଶାନ୍ତର୍ଗତ ଲକ୍ଷ୍ନୌର ଉତ୍ତରସ୍ଥ ଗୋଟିଏ ଜିଲ୍ଲା ଓ ସହର—Sitāpur;
Sita pura
सीतापुर name of a district and town near
सीतापुर Lucknow in the United Provinces.

ସୀତା ଫଳ—ଦେ. ବି—ସିତାଫଳ (ଦେଖ)
Sītā phaḻa — Sītā phaḻa. (See)

ସୀତା ବିକ—ସଂ. ବି— ସଶାଲକ (ରାସ୍ନମୁକୁଟ); ମାଷ; ବ୍ରୀହି —
Sītā bika — Kidney bean.

ସୀତାବିଞ୍ଜ—ଦେ. ବି (ନାମ)—କେନ୍ଦୁଝରର ପର୍ବତ ବିଶେଷ—
Sītā binja — Name of a mountain in the Keonjhar State of Orissā. [ଦ୍ର—କେନ୍ଦୁଝର ଜିଲ୍ଲାର ସଦର ମହକୁମା [ସବଡିଭିଜନ୍] ପାଣ୍ଟପଡ଼ା ଦଣ୍ଡପାଟ ଅନ୍ତର୍ଗତ ଭଙ୍ଗୁଅପଶି ଗ୍ରାମ ନିକଟସ୍ଥ ସୀତାନାମ୍ନୀ ନିର୍ଝରିଣୀର ଉପକୂଳରେ ସୀତାବିଞ୍ଜ ପର୍ବତ ଅବସ୍ଥିତ । ଏହା କେନ୍ଦୁଝର ଗଡ଼ର ପୂର୍ବକୁ ୧୨ ମାଇଲ ମଧ୍ୟରେ ଅବସ୍ଥିତ; ଉଚ୍ଚତା ୨୨୦୦ ଫୁଟ୍ । ସ୍ଥାନୀୟ କିମ୍ବଦନ୍ତୀ ଅନୁସାରେ ଏହି ସ୍ଥାନରେ ମହର୍ଷି ବାଲ୍ମୀକିଙ୍କ ଆଶ୍ରମ ଥିଲା । ବର୍ତ୍ତମାନ ମଧ୍ୟ ବାଲ୍ମୀକିଆଶ୍ରମ ନାମରେ ଗୋଟିଏ ଛୋଟ ପାହାଡ଼ ଏଠାରେ ଅଛି ଏବଂ ତହିଁରେ କେତେକ ଶିଳାଲିପି ଅଛି । ଏହି ପାହାଡ଼ ଦେହରେ ଗୋଟିଏ ଖୋଲ [କ୍ଷୁଦ୍ର ଗହ୍ୱର] ଅଛି । ତାକୁ ରାମତନୟ ଲବ କୁଶଙ୍କର ସୂତିକାଗାର କୁହାଯାଏ । ଏହି ଖୋଲକୁ ଲଗାଲଗି ହୋଇ ଆଉ ଗୋଟିଏ ଖୋଲ ଅଛି । ତହିଁରେ ତିନି ଗୋଟି ପ୍ରସ୍ତର ମୂର୍ତ୍ତି ଅଛି । ସ୍ଥାନୀୟ ଲୋକମାନେ ତନ୍ମଧ୍ୟରୁ ଗୋଟିକୁ ସୀତାଦେବୀ ଓ କୋଳକୃତ ଦୁଇଟି ଛୋଟ ପଥର ମୂର୍ତ୍ତିକୁ କୁଶ ଓ ଲବ କହୁଥାଆନ୍ତି ।

ଏହି ସ୍ଥାନର ଏକ ମାଇଲ ଦୂରରେ ସୀତାବିଞ୍ଜ ନାମରେ ଗୋଟିଏ ଗ୍ରାମ ଅଛି । ଏହି ଗ୍ରାମର ଦିହୁରୀ [ଯେଉଁ ବ୍ୟକ୍ତି ଗ୍ରାମବାସୀମାନଙ୍କୁ ଯେ କୌଣସି ସାମାଜିକ କାର୍ଯ୍ୟ ଉପଲକ୍ଷେ ଡାକି ଏକତ୍ର କରେ] ଉକ୍ତ ସୀତାଦେବୀଙ୍କ ମୂର୍ତ୍ତିକୁ ପୂଜା କରୁଥିଲେ । ପ୍ରତିଦିନ ଏକ ମାଇଲ ରାସ୍ତା ଚାଲି ଆସି ଏହି ପୂଜାବିଧି ସମାଧାନ କରିବା ତାହା ପକ୍ଷରେ କଷ୍ଟକର ହେବାରୁ ସେ ପ୍ରଥମେ ଏହି ସ୍ଥାନରେ ତାହାର କୁଟୀର ସ୍ଥାପନ କଲା । କ୍ରମେ ତାହାର ବଂଶ ବୃଦ୍ଧି ସଙ୍ଗେ ସଙ୍ଗେ ଏହା ବର୍ତ୍ତମାନ ଗୋଟିଏ ଗ୍ରାମରେ ପରିଣତ ହୋଇ ଭଙ୍ଗୁଅପଶି ନାମରେ ଅଭିହିତ ହେଉଅଛି । ତେଣୁ ଭଙ୍ଗୁଅପଶି ଗ୍ରାମଟି ସୀତାବିଞ୍ଜ ଗ୍ରାମର ସୃଷ୍ଟିର ବହୁକାଳ ପରେ ସ୍ଥାପିତ ।

ନିକଟବର୍ତ୍ତୀ ବହୁ ଗ୍ରାମରୁ ଯାତ୍ରୀମାନେ ଏଠାକୁ ପ୍ରତି ଗୁରୁବାର ଦିନ ଆସନ୍ତି । ମକରସଂକ୍ରାନ୍ତି ସମୟରେ ଏଠାରେ ତିନି ଦିନ ମେଳା ହୁଏ । ଯେଉଁ ସ୍ତ୍ରୀମାନଙ୍କର ସନ୍ତାନ ପ୍ରସବ କରିବାରେ ବିଳମ୍ବ ଦେଖାଯାଏ ସେମାନେ ଏଠାକୁ ଆସି ସୀତା ଦେବୀଙ୍କ ମୂର୍ତ୍ତିକୁ ପୂଜା କରନ୍ତି । ପ୍ରକୃତରେ ସେମାନେ ସନ୍ତାନ ପ୍ରସବ କରି ପାରିବେ କି ନାହିଁ, ଏହା ସ୍ଥିର କରିବା ନିମନ୍ତେ ଲବ କୁଶଙ୍କ ପ୍ରସ୍ତର ମୂର୍ତ୍ତି ଦୁଇଟିକୁ ଦୁଇ କାଖରେ ଧରି ସେହି ଠାକୁରାଣୀ ଥିବା ଗୁମ୍ଫାର ଗୃହ ପାଖରେ ବୁଲନ୍ତି । ଯେଉଁ ନାରୀ ଅକ୍ଲାନ୍ତଭାବେ ସାତଥର ପରିକ୍ରମଣ କରିପାରେ ତାହାର ବନ୍ଧ୍ୟାତ୍ୱ ପ୍ରତିପାଦିତ ହୁଏ । ଯେଉଁମାନେ ଦୁଇ ତିନିଥର ପରିକ୍ରମଣ କରି ଶ୍ରାନ୍ତ-କ୍ଳାନ୍ତ ହୋଇ ପଡ଼ନ୍ତି ସେମାନେ ଗର୍ଭଧାରଣ କରି ପାରିବେ ବୋଲି ସୂଚନା ମିଳେ । ଏହି ପରୀକ୍ଷା ଦେବା ନିମନ୍ତେ ଅନେକ ରମଣୀ ଏଠାକୁ ଆସିଥାନ୍ତି ।

ଉକ୍ତ ବାଲ୍ମୀକି ଆଶ୍ରମ ପାହାଡ଼ର ଅନତିଦୂରରେ ଆଉ ଦୁଇଗୋଟି କ୍ଷୁଦ୍ର ପାହାଡ଼ ଅଛି । ତହିଁମଧ୍ୟରୁ ଗୋଟିକୁ ରାବଣ ଛାୟା ଓ ଅନ୍ୟଟିକୁ ଭଣ୍ଡାରଘର କହନ୍ତି । ରାବଣ ଛାୟା ପାହାଡ଼ରେ ରାମ ରାବଣ ଯୁଦ୍ଧର ଚିତ୍ରମାନ ରହିଅଛି । ସୀତା ଦେବୀ ମୂର୍ତ୍ତିଙ୍କ ଦେହରେ ଯେଉଁ ଚନ୍ଦନ ଦିଆଯାଏ ତାହା ପ୍ରକୃତ ଚନ୍ଦନ ନୁହେଁ । ଉକ୍ତ ଭଣ୍ଡାରଘର ପାହାଡ଼ରୁ ଦେହୁରୀ ( ପୂଜକ ) ଏକପ୍ରକାର ପଥର ଆଣି ତାକୁ ଚନ୍ଦନ ପରି ଘୋରି ଠାକୁରାଣୀଙ୍କ ଦେହରେ ଲଗାଏ । ସେହିଭଳି ପଥର ଅନ୍ୟ ଜାଗାରେ ମିଳେ ନାହିଁ ।

ଭଣ୍ଡାରଘର ପାହାଡ଼ରୁ ରାବଣ ଛାୟା ପାହାଡ଼କୁ ଯିବା ବାଟରେ ଇଷ୍ଟକ ସ୍ତୂପମାନ ରହିଅଛି । ସେ ସବୁ ଗୋଟିଏ ଦୁର୍ଗର ଭଗ୍ନାବଶେଷ ପରି ଜଣାଯାଏ—ସନ୍ଦର୍ଭ ଲେଖକ, ଶ୍ରୀ ବଂଶୀଧର ମହାନ୍ତି । ]

ସୀତା ବ୍ରତ—ସଂ. ବି—ସୀତା ଜନ୍ମ ବ୍ରତ ( ଦେଖ )
Sītā brata — Sītā janma brata ( See )

ସୀତା ଭୋଗ—ଦେ. ବି—ସିତା ଭୋଗ ( ଦେଖ )
Sītā bhoga — Sitā bhoga ( See )

ସୀତା ମୁଖ—ସଂ. ବି ( ନାମ ) ( ବୃହ )—ଲାଙ୍ଗଳପଦ୍ଧତିର ମଧ୍ୟଭାଗ—
Sītā mukha — The inside of a furnow.

ସୀତା ରାମ—ସଂ. ବି ( ଦ୍ୱନ୍ଦ୍ୱ )—ସୀତା ଓ ରାମଚନ୍ଦ୍ର—Sīta and Rāmachandra.
Sītā rāma
ଦେ. ବି. ପୁଂ—ଲୋକଙ୍କୁ
सीताराम ଦିଆଯିବା ନାମ—A name given to males.
सीता राम

ସୀତାରାମପୁର—ଦେ. ବି—ଇଷ୍ଟ ଇଣ୍ଡିଅନ୍ ରେଲ ଲାଇନ୍‌ର ଗୋଟିଏ
Sitārāmapura ଷ୍ଟେସନ—A station on the main

সীতারামপুর line of E. I. Ry. from which a
सीतारामपुर line goes to Deoghar. [ଲୁ—ଏଠାରୁ ବାବା ବୈଦ୍ୟନାଥ ବା ଦେଓଘରକୁ ଶାଖା ଲାଇନ ଯାଇଅଛି । ]

ସୀତା ଶାଳ—ଗ୍ରା. ବି ( ସିଂହଭୂମ ) ବି—ଏକପ୍ରକାର ଧାନ—
Sitā śāli A species of paddy.

ସୀତକାର—ଦେ. ବି ( ସଂ. ସୀତ୍କାର )—ସୀତ୍କାର ( ଦେଖ )—
Sitikāra Sit-kāra ( See [ ଉ—କାମକଳେ ଉନ୍ନୁ
সীৎকার सीतकार ବୃଦ୍ଧ ରୋମାଞ୍ଚେ, କର୍ମ ସୀତକାରେ କୋଳ ନ ସୁଝେ—ଶିଶୁଶଙ୍କର• ଉଷାଅଭିଳାଷ । ]

ସୀତ୍କାର—ସଂ. ବି—ସୀତ୍କାର ( ଦେଖ )
Sitkāra Sit-kāra ( See )
( ସୀତ୍କାର—ଅନ୍ୟରୂପ )

ସୀତ୍କୃତ—ସଂ. ବିଣ—ସୀତ୍କୃତ ( ଦେଖ )
Sitkruta Sit-kruta ( See )
ସଂ. ବିଣ—ସୀତ୍କାର (ଦେଖ)—Sit-kāra (See)

ସୀତ୍ୟ—ସଂ. ବି ( ସୀତା=ଲଙ୍ଗଳ ପଦ୍ଧତି+ଯ )—୧ । ଧାନ୍ୟ
Sitya ( ହେମଚନ୍ଦ୍ର )—1. Paddy. ୨ । କୃଷ୍ଟକ୍ଷେତ୍ର; ଚଷ ହୋଇଥିବା ଜମି ( ଅମର —
2. A ploughed field.

ସୀତ୍ୟା—ଗ୍ରା. ଚ. ସ୍ତ୍ରୀ ( ଅଶୁଦ୍ଧ ଉଚ୍ଚାରଣ )—୧ । ସୀତା—
Sityayā 1. Sitā; the wife of Rāmachandra.
সীতা सीतिया ୨ । ସୀତାର ଡାକ ନାମ—
2. Nickname of Sitā.

ସୀଦତି—ସଂ. କ୍ରି (ସଂ.ସୀଦ୍ ଧାତୁ=ପୀଡ଼ା ପାଇବା+ବର୍ତ୍ତମାନ କାଳ, ଲଟ୍
Sidati ତି )—ପୀଡ଼ା ଭୋଗ କରୁଅଛି—Is suffering ( pain ). [ ଉ—ଦାସଗୃହେ ସୁଧା ସୀଦତି କାମ ବ୍ୟସ୍ତେ—ପ୍ରାଚୀ• ରସକାବ୍ୟ । ]

ସୀଦ୍ୟ—ସଂ. ବି (ସି• ଧାତୁ+କରଣ• ଦ୍ୟ)—ଅଳସ୍ୟ (ଶବ୍ଦ କଳ୍ପଦ୍ରୁମ)—
Sidya Idleness.

ସୀଧୁ—ସଂ. ବି ( ସୀଧ୍ ଧାତୁ=ଶୋଲବା+କର୍ମ. ଉ; ଲଘାଲଙ୍ଗିକ; ଏହା ପାନ କଲେ ଲଜ୍ଜା ଦୂର; ଅନ୍ୟରୂପ 'ଶୀଧୁ' ଓ
Sidhu 'ଶୀଧୂ' )—ପକ୍କ ଇକ୍ଷୁରସଜାତ ମଦ୍ୟ; ମଦରା; ଆଖୁ ଗୁଡ଼ଜାତ ମଦ୍ୟ—Wine made from boiled sugarcane-juice; sugar from molasses. [ ବ୍ର—ଏହା ସ୍ୱରଗ୍ନିବଲବର୍ଣ୍ଣକୃତ୍, ହୃଦ୍ୟ ଓ ବାତପିତ୍ତକର ଅଟେ । ଅପକ୍କ ଇକ୍ଷୁରସଜାତ ମଦ୍ୟକୁ ଶୀତରସ ବୋଲଯାଏ । ]

ସୀଧୁ ଗନ୍ଧ—ସଂ. ବି ( ୬ଷ୍ଠୀ ତତ୍ )—୧ । ମଦ୍ୟଗନ୍ଧ—1. The
Sidhu gandha smell of wine. ୨ । (ବହୁବ୍ରୀହି; ସୀଧୁ ଭଳି ଗନ୍ଧ ଯାହାର ) ବକୁଳ ଫୁଲ—2. The Bakula flower. ୩ । ବକୁଳ ଗଛ ( ଶବ୍ଦରତ୍ନାବଳୀ )—
3. The Bakula tree.

ସୀଧୁ ପୁଷ୍ପ—ସଂ. ବି ( ବହୁବ୍ରୀହି )—୧ । କଦମ୍ବ ( ରାଜନିର୍ଘଣ୍ଟ )—
Sidhu pushpa 1. The Neuclea Kadamba tree.
୨ । ବକୁଳ; ବଉଳ ( ରାଜନିର୍ଘଣ୍ଟ )—
2. The Bakula tree.

ସୀଧୁ ପୁଷ୍ପୀ—ସଂ. ବି ( ବହୁବ୍ରୀହି )—ଧାତକୀ ( ଦେଖ )—A flow-
Sidhu pushpi ering plant; Woodfordia Floribunda.

ସୀଧୁ ରସ—ସଂ. ବି ( ବହୁବ୍ରୀହି; ସୀଧୁ ପରି ରସ ଯାହାର )—ଅମ୍ରବୃକ୍ଷ—
Sidhu rasa Mango tree.

ସୀଧୁ ସଞ୍ଜ୍ଞ—ସଂ. ବି ( ସୀଧୁ+ସଞ୍ଜ୍ଞା ଯାହାର; ବହୁବ୍ରୀହି )—ବକୁଳ
Sidhu samjña ବୃକ୍ଷ ( ରାଜନିର୍ଘଣ୍ଟ )—
The Bakula tree.

ସୀଧ୍ର—ସଂ. ବି—୧ । ଅପାନ ( ଶବ୍ଦକଳ୍ପଦ୍ରୁମ ); ପ୍ରାଣବାୟୁବିଶେଷ;
Sidhra ଅଧୋବାୟୁ—1. One of the five vital airs of the body which passes hrough the anus.
୨ । ଗୁହ୍ୟଦ୍ୱାର—2. Anus.

ସୀପ—ସଂ. ବି—ପାତ୍ରୀ; ତର୍ପଣାଦ ପାଇଁ ବ୍ୟବହୃତ ଜଳପାତ୍ରବିଶେଷ
Sipa ( ଶବ୍ଦ କଳ୍ପଦ୍ରୁମ )—A small boat-shaped
কোষা, সীপ copper vessel used in pouring water
कोषा during the offering of water to the manes.

ସୀବନ—ସଂ. ବି ( ସୀବ୍ ଧାତୁ=ସିଲେଇ କରିବା+ଭାବ• ଅ )—୧ ।
Sibana ସିଲେଇ (ଅମର)—1. Sewing. ୨ । ସୂଚୀକର୍ମ—
2. Needle work. ୩ । ତନ୍ତୁ ସନ୍ତାନ; ବୁଣିବା; ବୁଣିବା ( ଶବ୍ଦ ରତ୍ନାବଳୀ )—3. Weaving.

ସୀବନୀ—ସଂ. ବି ( ସୀବ୍ ଧାତୁ+କରଣ• ଅନ+ସ୍ତ୍ରୀ. ଈ )—୧ ।
Sibani ସୂଚୀ; ଛୁଞ୍ଚ—1. Needle. ୨ । ( ବୈଦ୍ୟଶାସ୍ତ୍ର ଶଲ୍ୟକ୍ରିୟା ) ଲିଙ୍ଗାଗ୍ରଠାରୁ ଲିଙ୍ଗ ମୂଳ ଓ କୋଷର ମଧ୍ୟଦେଇ ଗୁହ୍ୟଦ୍ୱାର ପର୍ଯ୍ୟନ୍ତ ସିଲେଇ ( ହେମଚନ୍ଦ୍ର )—
2. Sewing of the part between the end of the penis up to the anus after an operation for scrotal tumour. ୩ । ଲିଙ୍ଗ-ମଣ୍ୟଧଃ ସୂତ୍ର—3. The vein or ridge running below the penis.

ସୀମନ୍ତ—ସଂ. ବି ( ସୀମନ୍=କେଶର ସୀମା+ଅନ୍ତ=ଶେଷ,
Simanta ନିପାତନ )—୧ । କେଶ ମଧ୍ୟରେ ରଚିତ ବର୍ତ୍ତ୍ମ ( ହେମଚନ୍ଦ୍ର ); କେଶବୀଥି; ସୂନ୍ଥା; ଶାଳଧ ଦ୍ୱାର ବିଭକ୍ତ କେଶମଧ୍ୟସ୍ଥ ରେଖା; କେଶରଚନାବିଶେଷ; ସାଙ୍ଗ—1. A mode of dressing the hair; the parting line between two tufts of combed hair; partition of the hair; a furrow done up on the head of women.
୨ । ସୀମନ୍ତୋନ୍ନୟନ ( ଦେଖ )—2. Simantonnayna. ( See ) ୩ । ଶିର; ମସ୍ତକ—3. The head.

**ସୀମନ୍ତକ**—ସଂ. ବି (ସୀମନ୍ତ+କ; ଏହାକୁ ସଧବାମାନେ ସୀମନ୍ତରେ **Simantaka** ଗ୍ରହଣ କରନ୍ତି)—୧ । ସିନ୍ଦୂର (ରାଜନିର୍ଘଣ୍ଟ)—1. Vermillion. ୨ । ନରକବାସୀ (ହେମଚନ୍ଦ୍ର)—2. Certain beings said to inhabit the hell. [ଦ୍ର—ଏମାନେ ସଂଖ୍ୟାରେ ୫ ଲକ୍ଷ ଥିବା କଥିତ ।] ୩ । (ସୀମନ୍ତ+କ); ସୀମନ୍ତ (ଦେଖ)—3. Simanta. (See) ୪ । ଅସ୍ଥିସଂଘାତ (ସୁଶ୍ରୁତ); ଅସ୍ଥିମାନଙ୍କ ମିଳନ ସ୍ଥଳ—4. The meeting place of bones. [ଦ୍ର—ଦେହସ୍ଥ ଅସ୍ଥି ସଂଖ୍ୟା ୩୦୦ ଓ ମତାନ୍ତରରେ ୩୬୦ । ସୀମନ୍ତକ ୧୪ଟି । ଅସ୍ଥିର ମିଳନ ସ୍ଥାନମାନ ସୀବିତ ଅର୍ଥାତ୍ ସିଲାଇ କରାଯାଏ ବୋଲି ଏହି ନାମ ଦିଆଯାଇଅଛି ।] ୫ । (ସୀମନ୍ତ+କୈ ଧାତୁ+କ କ୍ରି. ଅ) ରକ୍ତସିନ୍ଦୂର—5. Vermillion.

**ସୀମନ୍ତ ମଣି**—ସଂ. ବି—ସ୍ତ୍ରୀଲୋକମାନେ ସୀମନ୍ତରେ ଯେଉଁ ମଣି ପିନ୍ଧନ୍ତି; **Simanta mani** ମଥାମଣି—An ornament for the Simanta.

**ସୀମନ୍ତ ରେଖା**—ସଂ. ବି, ସ୍ତ୍ରୀ—ସୁନ୍ଥା ଗାର—The parting line **Simanta rekhā** dividing the hair on the head when combed. ସ. ବିଣ. ସ୍ତ୍ରୀ (ଲକ୍ଷଣାର୍ଥ)—ଶ୍ରେଷ୍ଠ—Best; paragon. [ଉ—ତାଙ୍କ ପଛେ ଯାନ୍ତି ସେବା ଗଜେନ୍ଦ୍ରଗାମିନୀ ରମଣୀ-ସୀମନ୍ତରେଖା ସ୍ୱର୍ଣ୍ଣ ମସ୍ତିତଳେ । ରାଧାନାଥ. ମହାଯାତ୍ରା ]

**ସୀମନ୍ତିତ**—ସଂ. ବିଣ (ସୀମନ୍ତ+ଯୁକ୍ତ ବା ବିଶିଷ୍ଟାର୍ଥେ ଇତ)—୧ । ସୀମନ୍ତ **Simantita** ବିଶିଷ୍ଟ (କେଶ); ମାଙ୍ଗ ବା ସୁନ୍ଥା କଟା ଯାଇ ଥିବା (କେଶ)—1. (a head) With hair parted in the middle. ୨ । ଦ୍ୱିବିଭକ୍ତ—2. Parted or divided into two.

**ସୀମନ୍ତିନୀ**—ସ. ବି. ସ୍ତ୍ରୀ (ସୀମନ୍ତ+ଅଛି ଅର୍ଥରେ ଇନ୍+ସ୍ତ୍ରୀ. ଈ; **Simantini** ଯାହାଙ୍କର ସୀମନ୍ତ ଅଛି, ଅର୍ଥାତ୍ ଯେ ବାଳରେ ସୁନ୍ଥା ପକାନ୍ତି)—୧ । ସ୍ତ୍ରୀ; ନାରୀ (ଅମର)—1. Woman. ୨ । ସୀମନ୍ତଧାରିଣୀ ସ୍ତ୍ରୀ; ସଧବା ସ୍ତ୍ରୀ (କାରଣ ସଧବାମାନେହିଁ ସୁନ୍ଥା କାଟିବାର ଓ ସୁନ୍ଥାରେ ସିନ୍ଦୂର ଲେଇବାର ଅଧିକାରିଣୀ)—2. A woman having her husband living. ସ. ବିଣ. ସ୍ତ୍ରୀ—[ସୀମନ୍ତୀ—ପୁଂ] ସୀମନ୍ତଧାରିଣୀ—(A woman) Having the dressed hair parted in the middle.

**ସୀମନ୍ତୀ**—ସ. ବିଣ, ପୁଂ (ଆଧୁନିକ ବ୍ୟବହାର; ସୀମନ୍ତ+ଅଛି ଅର୍ଥରେ, ଇନ୍; **Simanti** ୧ମା. ୧ବ)—ସୀମନ୍ତଧାରୀ; ଟେରି କାଟିବାବାଲା—(ସୀମନ୍ତିନୀ—ସ୍ତ୍ରୀ) Wearing the dressed hair parted in the middle. [ଦ୍ର—ଏହି ଶବ୍ଦ ସଂସ୍କୃତ ବ୍ୟାକରଣ ମତ ଅନୁସାରେ ଗଢ଼ା; କିନ୍ତୁ ପୂର୍ବକାଳରେ ପୁରୁଷମାନେ ସୁନ୍ଥା କାଟୁ ନ ଥିବାରୁ ଏ ଶବ୍ଦର ବ୍ୟବହାର ସଂସ୍କୃତ ଭାଷାରେ ନ ଥିଲା । ଆଜିକାଲି ପାଶ୍ଚାତ୍ୟ ଶିକ୍ଷା ପ୍ରଭାବରୁ ବାବୁମାନେ ନାନା ଭଙ୍ଗୀରେ (ଦଶ ଅଣି, ଆଠ ଅଣି, ଛଅ ଅଣି, ଚାରି ଅଣି, ଶୂନ୍ୟ ଅଣି ଇତ୍ୟାଦି ଅନୁପାତରେ) ମୁଣ୍ଡର ଆଗ ଓ ପଛ ବାଳକୁ କବରରେ କଟାଇ ସୁନ୍ଥା (ଫିରେଇ ବା ଟେରି) ପକାଇବାରୁ ଏହି ଶବ୍ଦର ଆଧୁନିକ ଯୁଗରେ ବ୍ୟବହାର ଆବଶ୍ୟକ ହୋଇ ଉଠିଅଛି ।] ଦେ. ବି (ସଂ. ସୀମନ୍ତ)—

ସିଁଥା(ଥା) ସୁନ୍ଥା; ଟେରି—The artistic parting of **सिंथ** the hair on the head. (ଉ—ଶିରରେ ସିମନ୍ତୀ ମୋଡଜାଲି ଅତି ଶୋଭି । କେଶବ ପଟ୍ଟନାୟକ. କେଶବ

**सीमन्तिनी** ରାମାୟଣ. ଅଯୋ ।) ଦେ. ବି—ସ୍ତ୍ରୀ—ସୀମନ୍ତିନୀ; ସ୍ତ୍ରୀ—**सीमन्तिनी** Woman; lady. (ଉ—ବହିଲ ସୀମନ୍ତୀ ମନ ଦୁଃଖେ । ପ୍ରାଚୀ. ରସବାରିଧି)

**ସୀମନ୍ତୋନ୍ନୟନ**—ସ. ବି (ସୀମନ୍ତ=ସୁନ୍ଥା+ଉନ୍ନୟନ=ଉପରକୁ **Simantonnayana** ଉଠାଇବା; ୬ଷ୍ଠୀ ତତ୍)—୧ । ସୀମନ୍ତକୁ ଊର୍ଦ୍ଧ୍ୱକୁ ନେବାରୂପ କ୍ରିୟା; କେଶକୁ ଗୋଟାଇ ନେଇ ସୁନ୍ଥା ନ ପକାଇ ବାନ୍ଧିବା, ସୁନ୍ଥାକୁ ଉପରକୁ ଉଠାଇ ନେଇ ବାଳ ବାନ୍ଧିବା—1. Tying of the hair of the head without parting it into ridges. ୨ । (ସପ୍ତମ୍ୟନ୍ତ ପଦାର୍ଥ ବହୁବ୍ରୀହି; ଯେଉଁ ସଂସ୍କାରରେ ସୀମନ୍ତର ବା ସୀମନ୍ତିତ କେଶର ଉନ୍ନୟନ କରାଯାଏ)—ଗର୍ଭିଣୀର ଗର୍ଭଧାରଣର ୪ର୍ଥ, ୬ଷ୍ଠ ବା ୮ମ ମାସରେ କର୍ତ୍ତବ୍ୟ ସଂସ୍କାର ବିଶେଷ; ଆପଣାର ଗର୍ଭିଣୀ ସ୍ତ୍ରୀର କେଶର ସୁନ୍ଥାକୁ ଭାଙ୍ଗି କେଶପାଶ ଗୋଟାଇ ବାନ୍ଧିବାରୂପ ପୁରୁଷ-କର୍ତ୍ତବ୍ୟ ସଂସ୍କାର; ହିନ୍ଦୁଙ୍କ ଦଶବିଧ ସଂସ୍କାର ମଧ୍ୟରୁ ତୃତୀୟ ସଂସ୍କାର—2. A ritual performed by the husband on the hair of a pregnant woman (on the 4th, 6th or 8th month of pregnancy) by combing the hair up without leaving a furrow. [ଦ୍ର—ଗର୍ଭର ତୃତୀୟ ମାସରେ ଅର୍ଥାତ୍ ଗର୍ଭାଧାନ ସଂସ୍କାର ପରେ ଗର୍ଭ ହେବା କଥା ସ୍ଥିର ହେଲେ ଜଣା ପଡ଼ିଲେ ପୁଂସବନ ସଂସ୍କାର କରାଯାଏ । ତତ୍ପରେ ଗର୍ଭର ୪ର୍ଥ, ୬ଷ୍ଠ ବା ଅଷ୍ଟମ ମାସରେ ସୀମନ୍ତୋନ୍ନୟନ ସଂସ୍କାର କରାଯାଏ । ସ୍ୱାମୀଙ୍କ ଅବିଦ୍ୟମାନତାରେ ଗର୍ଭିଣୀର ଭ୍ରାତା ବା ପିତା ଏ କ୍ରିୟା ଅନୁଷ୍ଠାନ କରିବେ । ନାରଦ ।

ଗର୍ଭ ସ୍ପନ୍ଦନକାଳଠାରୁ ପ୍ରସବକାଳ ପର୍ଯ୍ୟନ୍ତ ଏ ସଂସ୍କାର କର୍ତ୍ତବ୍ୟ ଓ ଯେତେ ଶୀଘ୍ର ଏହା ଅନୁଷ୍ଠିତ ହୁଏ, ସେତେ ଭଲ । ସ୍ୱାମୀ ହାତରେ ଗୋଟିଏ ଶର ବା କାଣ୍ଡ ଧରି ବେଦୋକ୍ତ ମନ୍ତ୍ର ଉଚ୍ଚାରଣପୂର୍ବକ ତାହା ଗର୍ଭିଣୀ ସ୍ତ୍ରୀର ସୀମନ୍ତର ମୂଳଦେଶରେ ଲଗାଇ ସମ୍ମୁଖ ଦ୍ୱାରା ସୀମନ୍ତର ଉଭୟ ପାର୍ଶ୍ୱସ୍ଥ ଦ୍ୱିଧାକୃତ କେଶକୁ ଏକତ୍ର କରି ଉପରକୁ ଟେକି ନେଇ ବାନ୍ଧି ଦିଅନ୍ତି ଏବଂ ଗର୍ଭିଣୀର କଣ୍ଠରେ ଉଦୁମ୍ବର ଫଳଗୁଚ୍ଛ ବାନ୍ଧି ଦିଅନ୍ତି । ଗର୍ଭବତୀଙ୍କ ଓ ଚରିତ୍ରଗତ ଗର୍ଭ ସବୁ ହେବା ଅବସ୍ଥାରେ ଗର୍ଭିଣୀର ସ୍ୱାମୀସହବାସ ନିଷେଧ ଅଟେ ।

ସୀମନ୍ତିନୀମାନଙ୍କ ସୀମନ୍ତ ବିନ୍ୟାସ ବାମିନୀଙ୍କ କାମନାସୂଚକ ଓ ସ୍ୱାମୀଙ୍କ ଚକ୍ଷୁରେ ପ୍ରଲୋଭନସୂଚକରୂପ ବୃଦ୍ଧି କରେ । ସୀମନ୍ତରୁ ଉନ୍ନୟନ କରି କେଶଗୁଚ୍ଛକୁ ଏକାଠେଇଁ କରି ବାନ୍ଧିଲେ ସ୍ତ୍ରୀମାନଙ୍କ ମୁଖସୌନ୍ଦର୍ଯ୍ୟ ସୀମନ୍ତସହିତ ମୁଖ ପରି ଅକ୍ଷୁଣ୍ଣ ଓ ରମଣୀୟ ହୁଏ ନାହିଁ । ଅତଏବ ଗର୍ଭଧାରଣର ଅନ୍ତ୍ୟତଃ ୪ର୍ଥମାସଠାରୁ ପ୍ରସବ ପର୍ଯ୍ୟନ୍ତ ଗର୍ଭିଣୀକର ସୀମନ୍ତୋନ୍ନୟନ ଦ୍ୱାରା ସ୍ୱାମୀଙ୍କ କାମପିପାସାରେ ବାଧା ଦେବା ବୋଧ ହୁଏ ଏହି 'ସୀମନ୍ତୋନ୍ନୟନ' ସଂସ୍କାରର ଗୂଢ଼ ଉଦ୍ଦେଶ୍ୟ ଥିଲା ।

ଆଜିକାଲି ଏହି ବୈଦିକ ପ୍ରଥା ପ୍ରଚଳିତ ନାହିଁ । କେବଳ ଗର୍ଭଧାରଣର ୭ମ ବା ୯ମ ମାସରେ ଚତଭକ୍ଷିଆ ପ୍ରଥା ହିନ୍ଦୁ ସମାଜରେ ପ୍ରଚଳିତ ଅଛି ।]

**ସୀମ ଲିଙ୍ଗ**—ସଂ. ବି (ସୀମନ୍+ଲିଙ୍ଗ)—ସୀମାଲିଙ୍ଗ (ଦେଖ)
Sīma liṅga Sīmāliṅga (See)
[ଉ—ଗ୍ରାମସ୍ଥ ଲୋକଗଣଙ୍କ ସମକ୍ଷରେ ଉଭୟ ପକ୍ଷ (ବାଦୀ ପ୍ରତିବାଦୀ)ଙ୍କ ଉପସ୍ଥିତିରେ ସାକ୍ଷୀମାନଙ୍କୁ ପଚାରି ସୀମଲିଙ୍ଗମାନ ସ୍ଥିର କରିବ—ମନୁ ୮।୨୫୮-୨୫୪ ।]

**ସୀମ ସ୍ଥାନ**—ଦେ· ବି (ସଂ· ସୀମନ୍+ସ୍ଥାନ)—୧ । ମୁଣ୍ଡ ତଳେ
Sīma sthāna ଦିଆଯିବା ତକିଆ—1. Pillow for the
ତାକିୟା तकिआ head. ( ଉ—ଶିରକୁ ସୀମସ୍ଥାନ ଯୋଗାଇ କର୍ପୂରଧୂଳି ସିଞ୍ଚା । ଉଲ୍ଲୁତରଣ. ମଥୁରାମଙ୍ଗଳ ।)
ମାଥା मस्तक ୨ । ମସ୍ତକ—2. Head.

**ସୀମା**—ସଂ· ବି (ସି, ଧାତୁ—ବନ୍ଧନ କରିବା+ମନ୍; ୧ମା· ୧ବ; ସ୍ତ୍ରୀ·
Sīmā ସୀମନ୍ ଶବ୍ଦର ପ୍ରଥମା, ଏକବଚନରେ ହେବା ।ସୀମା ଶବ୍ଦ ସ୍ତ୍ରୀଲିଙ୍ଗ ଏବଂ ସୀମନ୍ ଶବ୍ଦରେ ଅ ପ୍ରତ୍ୟୟ ହୋଇ କଳ୍ପିତ ହେବା ସୀମାଶବ୍ଦ କ୍ଲୀବଲିଙ୍ଗ)—୧ । ପ୍ରାନ୍ତ; ଅନ୍ତ; ଅବଧି—
1. Extremity. ୨ ।.ଶେଷ; ସମାପ୍ତି—2. End; finish. ୩। ଗ୍ରାମାଦିର ଅବଧାରିତ ଅନ୍ତଭାଗ; ସରହଦ—
3. Border; the defined limit of a village or country; boundary. ୪ । ତୀର; ସମୁଦ୍ରବେଳା—4. Sea-shore. ୫ । କ୍ଷେତ୍ର—5. A field; plot of land. ୬ । ମର୍ଯ୍ୟାଦା; ସ୍ଥିତି—
6. The bounds of morality or decorum; limits of propriety; etiquette; good manners. ୭ । ରୀତି; ପ୍ରଥା; ବ୍ୟବହାର—
7. Usage; custom. ୮ । ମୁଷ୍କ; ଅଣ୍ଡକୋଷ—
8. The scrotum. ୯ । ନିକଟବର୍ତ୍ତୀ ପ୍ରଦେଶ—
9. Adjacent tract of land.

[ଉ—ବାରି ନ ପାରି ରେ ବାରିକାଣି,
ବାରି ମଧ୍ୟେ ଭୁ ଥିଲୁ ବଳସି,
ଗୃହ ଦଶ୍ମୁ ପର୍ଯ୍ୟ ଲେ ମଣି,
ସଲାଇବ ମଣ୍ଡିଦେଲ୍ ମଣ୍ଡପ ସୀମାରେ—
ଚଳ ସମାରେ
ଜଣା ନ ଥିଲ ମାକଣ ହେବ ବୋଲି ଚେମା—
ଚତୁର୍ଥ ସଙ୍ଗୀତ ।]

[ଉ—ମନ୍ୱାଦି ଧର୍ମଶାସ୍ତ୍ରରେ ଚତୁର୍ବିଧ ସୀମାର ଉଲ୍ଲେଖ ଅଛି । ଯଥା—ଜନପଦ ସୀମା, ଗ୍ରାମ ସୀମା, କ୍ଷେତ୍ର ସୀମା ଓ ଗୃହ ସୀମା । ଏହା ଛଡ଼ା ସୀମାର ପଞ୍ଚବିଧ ଲକ୍ଷଣ ମଧ୍ୟ ଇହିଁରେ ବର୍ଣ୍ଣିତ ହୋଇଅଛି । ଯଥା—
୧ । ଧ୍ୱଜିନୀ—ବୃକ୍ଷାଦି ଚିହ୍ନିତ ସୀମା ।
୨ । ମତ୍ସ୍ୟିନୀ—ଜଳାଶୟ ଓ ନଦ୍ୟାଦି ଚିହ୍ନିତ ସୀମା ।
୩ । ନୈଧାନୀ—ଭୂମିତଳେ ପୋତା ହୋଇଥିବା ତୁଷ, ଅଙ୍ଗାରାଦି ଦ୍ୱାରା ଚିହ୍ନିତ ସୀମା ।
୪ । ଭୟବର୍ଜିତା—ଅର୍ଥୀ ଓ ପ୍ରତ୍ୟର୍ଥୀ ପରସ୍ପରଙ୍କ ସମ୍ମତିରେ କଳ୍ପିତ ସୀମା ।
୫ । ରାଜଶାସନନୀତା—ରାଜାଦେଶରେ କଳ୍ପିତ ସୀମା ।
ସୀମାବିବାଦର ମୀମାଂସା, ସୀମା ଲଙ୍ଘନର ଦଣ୍ଡ ଓ ସୀମାଲିଙ୍ଗ ବା ସୀମାଜ୍ଞାପକ ଚିହ୍ନ ସ୍ଥାପନ ପାଇଁ କାତ୍ୟାୟନ, ନାରଦ, ମନୁ, ମିତାକ୍ଷରା ପ୍ରଭୃତି ଧର୍ମଶାସ୍ତ୍ରମାନଙ୍କରେ ନାନାବିଧ ଉପଦେଶ ଲିପିବଦ୍ଧ ହୋଇଅଛି ।]

ପାଶ ଦେ· ଅ—ପାଖରେ; ନିକଟରେ; ଠାରେ—In; near.
କାଛେ [ଉ—ନନ୍ଦ ରଜା କୋଇଲେ ଯେ ତ ରାଜକେମା, ଚନ୍ଦ୍ର, ସୂର୍ଯ୍ୟ କର ନ ପଡ଼ନ୍ତି ତାର ସୀମା । କୃଷ୍ଣସିଂହ. ମହାଭାରତ
ସୀମା ବନ ।],ଦେ. ବି—ପାଖ; ନିକଟ—Nighness; proxi-
ପାଶ mity· [ଉ—ଯାହାର ଥିବାପାକ ରଜାଙ୍କୁ ମହିମା, ବୋଲୁଥାନ୍ତି ମଲେ ନ ଯାନ୍ତି ତାଙ୍କ ସୀମା ।
କୃଷ୍ଣସିଂହ· ମହାଭାରତ· ଉଦ୍ୟୋଗ ।]

**ସୀମା ଅଙ୍ଗାର**—ପ୍ରାଦେ (ଗଞ୍ଜାମ) ବି—କୋଇଲା—
Sīmā aṅgāra Coal.

**ସୀମା କାଉଁରିଆ**—ପ୍ରାଦେ (ଗଞ୍ଜାମ) ବି—ଲୋହିତ କାଉଁରିଆ—
Sīmā kāuṅriā A red variety of jute plant.

**ସୀମା କୃଷାଣ**—ଯ. ବି—ସୀମା ସନ୍ନିହିତ କ୍ଷେତକର୍ଷକ; ଚାଷୀବିଶେଷ—
Sīmā krushāṇa Persons cultivating lands on the boundary of any land.

**ସୀମା ଚଂକ୍ରମଣ**—ଯ. ବି (୬ଷ୍ଠୀ ତତ୍; ସୀମା+ଚଂକ୍ରମଣ)—ସୀମାତିକ୍ରମଣ; ଅନ୍ୟର ସୀମାଲଙ୍ଘନ—
Sīmā chaṁkramaṇa
Encroaching on the boundary of another.

**ସୀମାଚ(ଞ୍ଚ)ଳ**—ଦେ. ବି (ନାମ) (ସଂ· ସିଂହାଚଳ)—ଦାକ୍ଷିଣାତ୍ୟର
Sīmācha(ñcha)la ତୀର୍ଥ ବିଶେଷ—Simāchala—a [ସିଂହାଚଲମ୍—ଅନ୍ଧ୍ରଭାଷା] shrine in South India in
सीमाचल the district of Vizag. [ଉ—ଏହା ବିଶାଖା-
सीमांचल ପାଟଣା ଷ୍ଟେସନଠାରୁ ଉତ୍ତରପଶ୍ଚିମରେ ୨୩୨ ମାଇଲ ଦୂରରେ ଅବସ୍ଥିତ ୱାଲ୍‌ଟେୟାର୍ ଷ୍ଟେସନଠାରୁ ୮ ମାଇଲ ଦୂରରେ ପର୍ବତ ଉପରେ ଅବସ୍ଥିତ । ଏହି ପର୍ବତର ନାମ ସଂସ୍କୃତରେ ସିଂହାଚଳ ଓ ଭାଷାରେ ସୀମାଚଳ ଏବଂ ତେଲୁଗୁ ଭାଷାରେ ସିମ୍ହାଚଳମ୍ ଅଟେ । ଏହା ଦେଡ଼଼ଶ ଫୁଟର ଏକ ଉଚ୍ଚ ବୋଲି ବର୍ଣ୍ଣିତ । ପାଷାଣ ନିର୍ମିତ ପାହାଚ [illegible] [illegible] ଅନେକ ଲୋକ ପର୍ବତୋପରିସ୍ଥ ମନ୍ଦିର ଦର୍ଶନ କରିବାକୁ ଯାଆନ୍ତି । ପର୍ବତ

ଶୃଙ୍ଗରୁ ଝରଣା ସମୂହ କମ୍ପରୁ ପ୍ରବାହିତ ହୋଇ ପର୍ବତ-ପାର୍ଶ୍ୱରେ ଓ ନିମ୍ନଦେଶରେ ଥିବା କ୍ଷେତ୍ରମାନଙ୍କରେ କଦଳୀ, ସପୁରି, ନଡ଼ିଆ, ଗୁଆ, ଅମ୍ବ, ଅମୃତଭଣ୍ଡା, ପଣସ ଆଦି ଫଳ ଓ ଚମ୍ପା, ଗୋଲାପ, କନିଅର ପ୍ରଭୃତି ପୁଷ୍ପମାନଙ୍କ ଦ୍ୱାରା ପର୍ବତକୁ ସୁଶୋଭିତ କରୁଅଛି । ଏହି ମନ୍ଦିରରେ ହିରଣ୍ୟକଶିପୁ-ହନ୍ତା ନୃସିଂହଙ୍କ ମୂର୍ତ୍ତି ପ୍ରତିଷ୍ଠିତ ଅଛନ୍ତି । ମନ୍ଦିରର ଦକ୍ଷିଣ ପାର୍ଶ୍ୱରେ ଶତାଧିକ ପ୍ରସ୍ତର ସ୍ତମ୍ଭଯୁକ୍ତ ବହୁଧ ମୂର୍ତ୍ତି-ଶୋଭିତ ନାଟ-ମଣ୍ଡପ ଅଛି । କଥିତ ଅଛି ଯେ, ଭକ୍ତପ୍ରବର ପ୍ରହ୍ଲାଦ ସ୍ତବ କରିବାରୁ ଭଗବାନ୍ ନୃସିଂହମୂର୍ତ୍ତି ଧାରଣ କରି ଏହି ସ୍ଥାନରେ ଅବତୀର୍ଣ୍ଣ ହୋଇଥିଲେ । ଏହା "ବରାହ ନରସିଂହ" କ୍ଷେତ୍ର ବୋଲି ପ୍ରସିଦ୍ଧ । ମନ୍ଦିରର ଚତୁଃପାର୍ଶ୍ୱରେ ଶୂକର ଶାବକମାନେ ବିଚରଣ କରନ୍ତି ଏବଂ ସ୍ଥାନୀୟ ଲୋକେ ଏହି ଶୂକରମାନଙ୍କୁ ଘୃଣାଚକ୍ଷୁରେ ଦେଖନ୍ତି ନାହିଁ । ସୀମାଚଳରେ ଥିବା ମନ୍ଦିର ଉତ୍କଳର ରାଜା ଲାଙ୍ଗୁଲା ନରସିଂହଦେବଙ୍କ ଦ୍ୱାରା ନିର୍ମିତ ହୋଇଥିଲା ଏବଂ ପରେ ବିଜୟନଗରର ମହାରାଜା କୃଷ୍ଣଦେବ ପ୍ରାୟ ୨୫୦ ବର୍ଷ ପୂର୍ବେ ଏହି ମନ୍ଦିରର ଜୀର୍ଣ୍ଣ ସଂସ୍କାର କରି ଦେବସେବା ପାଇଁ ବାର୍ଷିକ ୧୫ ହଜାର ଟଙ୍କା ଆୟର ଭୂସମ୍ପତ୍ତି ଦେଇଅଛନ୍ତି । ବୈଶାଖ ଶୁକ୍ଳ ତୃତୀୟା (ଅକ୍ଷୟ ତୃତୀୟା) ଓ ଏକାଦଶୀ ଦିନ ଦେବଙ୍କର ବିଗ୍ରହର ଦର୍ଶନ ମିଳେ; ଅନ୍ୟ ସମୟରେ ବିଗ୍ରହର ସର୍ବାଙ୍ଗ ଚନ୍ଦନ ଲିପ୍ତ ଥାଏ । ମନ୍ଦିରର ଏକ ପାର୍ଶ୍ୱରେ ସୂର୍ଯ୍ୟଦେବଙ୍କର ସପ୍ତାଶ୍ୱଯୁକ୍ତ ପ୍ରସ୍ତରର ଶିଳ୍ପକଳାମଣ୍ଡିତ ରଥ ଶୋଭା ପାଉଅଛି ।

ମଦନମୋହନ ପଟ୍ଟନାୟକ—ତୀର୍ଥଦର୍ଶନ ।]

**ସୀମା ଚିହ୍ନ**—ସଂ. ବି—ସୀମାଲିଙ୍ଗ (ଦେଖ)
**Sīmā chihna** Sīmāliṅga. (See)

**ସୀମା ଚିହ୍ନିତ**—ସଂ. ବିଣ (ସପ୍ତମୀ ତତ୍) —ଯହିଁର ସୀମାରେଖା ଅଙ୍କିତ
**Sīmā chihnita** ହୋଇଅଛି—Having the boundary line demarcated.

**ସୀମା ଜ୍ଞାନ**—ସଂ. ବି(୬ଷ୍ଠୀ ବା ୭ମୀ ତତ୍)—ସୀମା ସମ୍ବନ୍ଧରେ ସ୍ଥିର ଧାରଣା
**Sīmā jñāna** —Knowledge about any boundary.

**ସୀମା ଜ୍ଞାପକ**—ସଂ. ବିଣ—ଯେଉଁ ପଦାର୍ଥଦ୍ୱାରା କୌଣସି ସ୍ଥାନର ସୀମା
**Sīmā jñāpaka** ଜଣା ପଡ଼େ—(A thing or mark) Indicating the boundary.

**ସୀମାତିକ୍ରମ**—ସଂ. ବି—ସୀମା ଲଙ୍ଘନ; ନିର୍ଦ୍ଧାରିତ ସୀମାକୁ ଅତିକ୍ରମ—
**Sīmātikrama** Encroachment; going beyond
(ସୀମାତିକ୍ରମଣ, ସୀମାଉଲ୍ଲଙ୍ଘନ—ଅନ୍ୟରୂପ) the bounds.

**ସୀମାତୀତ**—ସଂ. ବିଣ(୨ମୀ ତତ୍)—୧ । ଯାହା ସୀମାରୁ ବାହାରେ ପଡ଼ିଅଛି—
**Sīmātīta** 1. That wich is beyond the bound.
୨ । ଅସୀମ—2. Limitless.

**ସୀମା ନିରୂପଣ**—ସଂ. ବି (୬ଷ୍ଠୀ ତତ୍)—କୌଣସି ସ୍ଥାନର ସୀମାର ସ୍ଥିରୀ-
**Sīmā nirūpaṇa** କରଣ—Ascertainment of the
(ସୀମାନିର୍ଣ୍ଣୟ, ସୀମା ନିର୍ଦ୍ଦେଶ—ଅନ୍ୟରୂପ) boundary; settling
[ସୀମା ନିର୍ଣ୍ଣାୟକ, ସୀମା ନିର୍ଦ୍ଦେଶକ—ବିଣ] up of the limits.

**ସୀମା ନିର୍ଣ୍ଣୀତ**—ସଂ. ବିଣ (ସପ୍ତମୀ ତତ୍)—ସୀମା ଚିହ୍ନିତ (ଦେଖ)
**Sīmā nirṇṇita** Sīmā chihnita. (See)
(ସୀମା ନିର୍ଦ୍ଦିଷ୍ଟ—ଅନ୍ୟରୂପ)

**ସୀମାନା**—ଦେ. ବି ( ସଂ. ସୀମନ୍ )—ସରହଦ; ସୀମା—
**Sīmānā** সোমানা **सीमाना** Boundary.

**ସୀମାନା ସରହଦ୍(ଦ୍)**—ଦେ. ବି (ଏକାର୍ଥକ ସହଚର; ସଂ. ସୀମା; ଫା.
**Sīmānā sarahad(dd)** ସରହଦ୍)—ସୀମା—Boundary.
সীমানা সরহদ **सरहद् सीमाना**

**ସୀମାନ୍ତ**—ସଂ. ବି (ଏକାର୍ଥକ ସହଚର)—୧ । ସୀମା—1. Boundary. ୨ । ( ୬ଷ୍ଠୀ ତତ୍ ) ସୀମାର ବହିର୍ଭୂତ
**Sīmānta** ନିକଟବର୍ତ୍ତୀ ଦେଶ—2. Frontier; a place adjoining the boundary. ସଂ. ବିଣ—୧ । ସୀମାର ଅନ୍ତର୍ଗତ ଶେଷଭାଗ—1. Last or extreme (part of a country on the boundary). ୨। ସୀମାର ବହିର୍ଭୂତ ନିକଟବର୍ତ୍ତୀ—2. Situated beyond the frontier and adjoining it.

**ସୀମାନ୍ତର୍ଗତ**—ସଂ. ବିଣ ( ୬ଷ୍ଠୀ ତତ୍ )—ସୀମାମଧ୍ୟରେ ଅବସ୍ଥିତ—
**Sīmāntargata** Situated or included in the
(ସୀମାନ୍ତର୍ବର୍ତ୍ତୀ—ଅନ୍ୟରୂପ) boundary.

**ସୀମାନ୍ତ ଦେଶ**—ସଂ. ବି—୧ । କୌଣସି ଦେଶର ସୀମାକୁ ଲାଗିଥିବା
**Sīmānta deśa** ଦେଶ—[ ଦ୍ର—ଉତ୍ତର-ପଶ୍ଚିମ ସୀମାନ୍ତ
[ ସୀମାନ୍ତ ପ୍ରଦେଶ—ଅନ୍ୟରୂପ ] ପ୍ରଦେଶ ଭାରତ ଓ ଆଫଗାନ
ସ୍ଥାନ ମଧ୍ୟରେ ଅବସ୍ଥିତ ।] 1. The frontier Province [N. W. Frontier Province between India and Afganistan. ୨ । ଦୁଇ ଦେଶ ମଧ୍ୟସ୍ଥ ବିବାଦୀୟ ଭୂମି—
2. Debatable land between two countries.

**ସୀମାନ୍ତ ନୀତି**—ସଂ. ବି ( ଅଧୁନାତନ ବ୍ୟବହାର )—ସୀମାନ୍ତ ଦେଶର
**Sīmānta nīti** ଅଧିକାର ବା ଶାସନ ସମ୍ବନ୍ଧୀୟ ବନ୍ଦୋବସ୍ତ—
Frontier policy of the Government.

**ସୀମାନ୍ତ ବାଣିଜ୍ୟ**—ସଂ. ବି ( ଅଧୁନାତନ ପ୍ରୟୋଗ )—ସୀମାନ୍ତ ପ୍ରଦେଶର
**Sīmānta bāṇijya** ବାଣିଜ୍ୟ—Trade in the frontier.

**ସୀମାନ୍ତର**—ସଂ. ବି ( କର୍ମଧା )—ଅନ୍ୟ ସୀମା—
**Sīmāntara** Another limit.

**ସୀମାବଚ୍ଛିନ୍ନ**—ସଂ. ବ ( ୩ୟା ତତ୍; ସୀମା + ଅବଚ୍ଛିନ୍ନ )—ସସୀମ,
**Sīmābachchhinna** ନିର୍ଦ୍ଦିଷ୍ଟ ସୀମାଦ୍ୱାରା ଆବଦ୍ଧ—Bounded
[ ସୀମାବଦ୍ଧ—ଅନ୍ୟରୂପ ] by fixed limits; limited.

**ସୀମ ବାଇଗଣ**—ଦେ. ବି (ବୈଦେଶିକ)—ଏକପ୍ରକାର ଗଛ ଓ ତାହାର
**Simā bāigaṇa** ଫଳ—A kind of tree and its fruit. [ ଦ୍ର—ଏହି ଫଳ ଅମ୍ଳ, ମଧୁର ଓ ଲୁଣଚର ।

ଏହା ମେହ, ଅଗ୍ନିମାନ୍ଦ୍ୟ, ଶ୍ୱାସ ଓ ଯକ୍ଷ୍ମରୋଗରେ ହିତକର —ଦ୍ରବ୍ୟଗୁଣ. କଳ୍ପଦ୍ରୁମ ।]

ସୀମା ବାଦ(ବିବାଦ)—ସଂ. ବି—ଏକାଧିକ ବ୍ୟକ୍ତିଙ୍କ ମଧ୍ୟରେ ଘଟିବା Sīmā bāda(bibāda) ସୀମା ସମ୍ବନ୍ଧୀୟ କଳହ—Boundary dispute. [ ଦ୍ର—ସୀମାବିବାଦ ଉପରେ, ଅର୍ଥାତ୍ କେଉଁ କେଉଁ ପ୍ରମାଣ ଗ୍ରହଣପୂର୍ବକ ମୀମାଂସା କରାଯିବ, କେଉଁ ଶ୍ରେଣୀର ସାକ୍ଷୀ ଏଥିପାଇଁ ଅବଶ୍ୟକ ଓ ସୀମା ବିବାଦ ମୀମାଂସା ପରେ ସୀମା କପଟଭାବରେ ଉଲ୍ଲଙ୍ଘନ କରିବାରୁ ହେବ, ଏହା ସ୍ମୃତି ( ଧର୍ମଶାସ୍ତ୍ର ଓ ସଂହିତା )ମାନଙ୍କରେ ବିଶେଷଭାବରେ ବର୍ଣ୍ଣିତ ହୋଇଅଛି ।]

ସୀମା ବିଲାତ—ପ୍ରାଦେ. ( ଗଞ୍ଜାମ ) ବି—ଇଂଲଣ୍ଡ— Sīmā bilāta England.

ସୀମା ମଞ୍ଜୁଆତି—ଦେ. ବି ( ବୈଦ୍ୟକ )—ଏକପ୍ରକାର ଗଛ— Sīmā mañjuāti A kind of tree. [ ଦ୍ର—ଏହାର ପତ୍ରର କ୍ୱାଥ ବାତବେଦନା ହରଣ କରେ । ଏହି ଗଛର ମୂଳକୁ ସୋରିଷ ତେଲରେ ଫୁଟାଇ ମୁଣ୍ଡରେ ମର୍ଦ୍ଦନ କଲେ ଉକୁଣି ମରନ୍ତି । ଏହାର ବୀଜ ଗଞ୍ଜାଇ ତୁଲ୍ୟ ମାଦକ ଓ ବାର୍ଯ୍ୟବର୍ଦ୍ଧକ । ଅନେକ ରୋଗରେ ଏହାର ମୂଳ, ପତ୍ର ଓ ବୀଜ ବିଶେଷ ଉପକାରୀ—ଦ୍ରବ୍ୟଗୁଣ. କଳ୍ପଦ୍ରୁମ ।]

ସୀମା ରେଖା—ସଂ. ବି ( ମ. ପ. ଲୋ; ସୀମା+ରେଖା )—ସୀମାଜ୍ଞାପକ Sīmā rekhā ରେଖା—Boundary line.
सीमा रेखा सीमा रेखा [ ସୀମା ଲାଇନ୍—ଦେ. ରୂପ ]

ସୀମା ଲଙ୍ଘନ—ସଂ. ବି—୧ । ସୀମାକୁ ଅତିକ୍ରମିବା—1. Encroach- Sīmā laṅghana ment. ୨ । ( ଲକ୍ଷଣାର୍ଥ ) ମର୍ଯ୍ୟାଦାର [ ସୀମା ଲଂଘୀ—ବିଣ. ପୁଂ ] ଅତିକ୍ରମଣ—2. (figurative) [ ସୀମା ଲଂଘିନୀ—ବିଣ. ସ୍ତ୍ରୀ ]; Stepping beyond the bounds of etiquette.

ସୀମା ଲିଙ୍ଗ—ସଂ. ବି(ମ. ପ. ଲୋ)—୧ । ଦୁଇ କ୍ଷେତ୍ରର ବା ଗ୍ରାମାଦିର Sīmā liṅga କଳ୍ପିତ ସୀମାରେଖାକୁ ଚହ୍ନାଇବା ପାଇଁ ସେହି ରେଖା ଉପରେ ଦିଆଯିବା ଚିହ୍ନ—1. Boundary mark. ୨। ଯେଉଁ ବୃକ୍ଷାଦିଦ୍ୱାରା କୌଣସି ସ୍ଥାନର ସୀମା ସ୍ଥିର କରାଯାଇ ପାରେ—2. Landmark.

ସୀମା ଶୂନ୍ୟ(ହୀନ)—ସଂ. ବିଣ (୬ଷ୍ଠୀ ତତ୍)—ଅସୀମ;ଯାହାର ସୀମା ନାହିଁ Sīmā śūnya(hīna) —Boundless; limitless.

ସୀମା ସନ୍ଧି—ସଂ. ବି (୬ଷ୍ଠୀ ତତ୍)—ସୀମା ରେଖା— Sīmā sandhi Boundary line.

ସୀମା ସନ୍ନିହିତ—ସଂ. ବିଣ (୭ମୀ ତତ୍)—ସୀମାର ନିକଟବର୍ତ୍ତୀ— Sīmā sannihita Adjoining the boundary.

ସୀମା ସର୍‌ହଦ୍(ଦ୍)—ଦେ. ବି ( ଏକାର୍ଥକ ସହଚର; ସଂ. ସୀମା+ Sīmā sarhad(d ଫା. ସର୍‌ହଦ୍ )—ସୀମା—Boundary.
सीमा सरहद सीमा सरहद्

ସୀମା ସ୍ଥାନ—ଦେ. ବି (ସଂ. ସୀମନ୍+ସ୍ଥାନ)—ମସ୍ତକ—Head. [ଉ- Sīmā sthāna ଜାନୁରେ ରଖି ସୀମାସ୍ଥାନ । ଦେ ବନ୍ଦି ଶ୍ରୀକୃଷ୍ଣ सीमास्थान मस्तक ଚରଣ—ଜଗନ୍ନାଥ. ଭାଗବତ ।]

ସୀମୀକ—ସଂ. ବି ( ସ୍ୟମ୍ ଧାତୁ+ଈକ; ସିଦ୍ଧାନ୍ତ କୌମୁଦୀ )—୧ । Sīmīka ବୃକ୍ଷଭେଦ ( ସଂକ୍ଷିପ୍ତସାର )—1. A kind of tree. ୨ । ବଲ୍ମୀକ; ଗୃହ ଘରର ଓଳି ( ସଂକ୍ଷିପ୍ତସାର )—2. Eaves of a thatched house. ୩ । ସୂକ୍ଷ୍ମ କୃମି ଜାତି ( ସଂକ୍ଷିପ୍ତସାର )—3. A tiny worm.

ସୀର—ସଂ. ବି ( ସି. ଧାତୁ=ବନ୍ଧନ କରିବା+କର୍ତ୍ତ. ର; ଇ ସ୍ଥାନରେ Sīra ଈ ଆଦେଶ )—୧ । ସୂର୍ଯ୍ୟ ( ମେଦିନୀ )—1. The sun. ୨ । ହଳ; ଲଙ୍ଗଳ ( ଅମର )—2. Plough. [ଉ—ବଳ ଥିଲୁ ଭୂମେ, ବିଚ୍ଛେଦ ସୀରକୁ ହୃଦ ଅରମ୍ଭେ—ଉପେ. ବୈଦେହୀଶବିଳାସ । ] ୩ । ଅର୍କ ବୃକ୍ଷ— 3. Calotropis Gigantea ( plant ).

ସୀରକ—ସଂ. ବି ( ସୀର=ଲଙ୍ଗଳ+ଉପମାନାର୍ଥେ. କ )—ଶିଶୁମାର Sīraka ( ଶବ୍ଦମାଳା )—The Gangetic purpoise or dolphin.

ସୀରଧ୍ୱଜ—ସଂ. ବି ( ସୀର=ଲଙ୍ଗଳ+ଧ୍ୱଜ=ଚିହ୍ନ; ବହୁବ୍ରୀହି )— Sīra dhwaja ଜନକ ରାଜା—King Janaka. [ ଦ୍ର— ଏ ହ୍ରସ୍ୱରୋମ ରାଜାଙ୍କର ପୁତ୍ର । ଏ ପୁତ୍ରକାମ ହୋଇ ଯଜ୍ଞ- ଭୂମି ଚଷ କରୁଥିଲେ ଲଙ୍ଗଳ ସିଅର ମଧ୍ୟରୁ ସୀତା ବାହାରିଲେ । ଏହାଙ୍କ ପୁତ୍ର ଭାନୁମାନ—ବିଷ୍ଣୁପୁରାଣ ।]

ସୀର ପାଣି—ସଂ. ବି ( ସୀର=ଲଙ୍ଗଳ; ପାଣି=ହାତରେ ଯାହାର; Sīra pāṇi ବହୁବ୍ରୀହି )—ବଳଦେବ ( ଅମର )— Baladeba.

ସୀରୀ—ସଂ. ବି (ସୀର=ଲଙ୍ଗଳ+ଅସ୍ତି ଅର୍ଥରେ ଇନ୍; ୧ମା. ୧ବ)— Sīrī ୧ । ବଳଦେବ—1. Baladeba. ୨ । ବିଷଲଙ୍ଗଳ; ଭିଷଲାଙ୍ଗଳିଆ ( ଭାବପ୍ରକାଶ )— 2. Wolfsbane; Aconitum Napellus.

ସୀଳନ୍ଧ—ସଂ. ବି—ଶିଳନ୍ଦ ( ଦେଖ )— Sīlandha Silinda ( See )

ସୀସ—ସଂ. ବି—ସୀସା ନାମକ ଏକପ୍ରକାର ଖନିଜ ପଦାର୍ଥ ବା ଧାତୁ— Sīsa Lead; plumbum. [ଦ୍ର—

ସୀସକ, ସୀସପତ୍ରକ } ଅନ୍ୟରୂପ
ଓ. ସୀସା
सीसा
सीसक, सीसा
ତେ. ସିସମୁ, ଶଶି
ବା. ସିସେ
ଫା. ସୁର୍ବ
ଅ, ରୁସାସୁଲ୍, ଅସ୍‌ୱଦ୍
ଅନ୍ୟ ସଂ. ଶବ୍ଦ—ବ୍ରଧ୍ନ, ବପ୍ର, ଯୋଗେଷ୍ଟ, ସିନ୍ଧୁ, ସିନ୍ଦୂରକ, ନାଗ, ରକ୍ତଧାତୁ, ଚୀନ, ଚୀନପିଷ୍ଟ, ତାରଶୁଦ୍ଧିକର,

ଅନ୍ୟ ଧାତୁ ଅପେକ୍ଷା ଏହା ଶୀଘ୍ର ତରଳ ଯାଏ ଓ ଏଥିରେ ବହୁତର ଛିଦ୍ର ଓ ପୁରା ଛିଅର ଦୁଏ । ଏହା ବଙ୍ଗ ତୁଲ୍ୟ ଗୁଣକର ଓ ପ୍ରମେହ ରୋଗରେ ବିଶେଷ ଉପକାରୀ । ଏହାକୁ ଜାରଣ କରି ସେବନ କଲେ ଶତ ନାଗ ତୁଲ୍ୟ ବଳ, ରୋଗନାଶ, ଶରୀର ଦୃଢ଼ତା, ଅଗ୍ନିଦୀପ୍ତି ଓ କାନ୍ତି ବୃଦ୍ଧି ହୁଏ ଏବଂ ଏହାଦ୍ୱାରା ବାର୍ଦ୍ଧକ୍ୟ ଓ ମୃତ୍ୟୁ ଦୂର ହୋଇଥାଏ । ଅଶୋଧିତ ସୀସକ ସେବନ କଲେ କୁଷ୍ଠ, ଶୂଳ, ଜ୍ୱର, ପ୍ରମେହ, ବାୟୁ-ରୋଗ, ଅଗ୍ନିମାନ୍ଦ୍ୟ, ଶୋଥ ଓ ଭଗନ୍ଦର ଜାତ ହୁଏ ।

ସିନ୍ଦୁରକାରଣ, ବର୍ଙ୍ଗ, ବହୁମଲ, ପଦ୍ମ, ସ୍ୱର୍ଣ୍ଣାର, ଯବନେଷ୍ଟ, ଯବନେଷ୍ଟକ, ମୃତୁଳକୃଷ୍ଣାୟସ, ସୁବର୍ଣ୍ଣକ, ବଧ୍ର, ପିଚ୍ଚଟ, ପରିପିଷ୍ଟକ, ବସ୍ୱୋବଙ୍ଗ, ସ୍ୱବର୍ଣ୍ଣାର, ବପ୍ର, ବଧ୍ରକ, ଭୁରଙ୍ଗ, ମହାବଳ, ଜଡ଼, ଭୁଜଙ୍ଗମ, ଉରଗ । ସୀସକକୁ ଜାରଣ କରି ଭୁଇପ୍ରକାର ଭସ୍ମ କରାଯାଏ; ଯଥା—ଶୀଘ୍ର ଭସ୍ମ—ଗୋଟିଏ ଲୌହ ପାତ୍ରରେ ମୃଦୁ ଜାଳରେ ଚଢ଼ାଇ ନ ଜଳିବା ପର୍ଯ୍ୟନ୍ତ ଯବକ୍ଷାର ମିଶାଇ ଘାଣ୍ଟୁଥିବ । ଭୃଷ୍ଟଭସ୍ମ—ସୀସକକୁ ନିଆଁରେ ତରଳାଇ ସେଥିରେ ଅଳ୍ପ ଅଳ୍ପ ମନଃଶିଳ ଚୂର୍ଣ୍ଣ ମିଶାଇ ଘାଣ୍ଟିବ ଏବଂ ଧୂଳି ପରି ଚୂର୍ଣ୍ଣ ହୋଇଗଲେ ତାକୁ ଶୀତଳ କରି ଉର୍ଦ୍ଧ୍ୱରେ ଗନ୍ଧକ ଚୂର୍ଣ୍ଣ ମିଶାଇ ଲେମ୍ବୁ ରସରେ ବାଟି ଗଜପୁଟରେ ପାକ କରିବ । ]

ସୀସା ( ଇତ୍ୟାଦି )—ଦେ. ବି ( ସଂ. ସୀସକ )—୧ । ଶିଶା ଇତ୍ୟାଦି
Sīsā ( etc ) ( ଦେଖ )—1. Śiśā etc ( See ) ୨ । ବନସିର ଡେରଣ୍ଡାଠାରୁ ଥୋପ ପର୍ଯ୍ୟନ୍ତ ପାଣି ଭିତରେ ଥିବା ଡୋରକୁ ସଳଖଭାବରେ ରଖିବା ପାଇଁ ବ୍ୟବହୃତ ହେବା ଭାର—2. Weight attached to the angling line a few inches above the float to keep the float erect on water. [ ଦ୍ର—ଏହା ସାଧାରଣତଃ ସୀସାରେ ନିର୍ମିତ ହୋଇଥାଏ । ]

ସୀସା ଗୁଳି(ଳି)—ଦେ. ବି—୧। ସୀସକରେ ପ୍ରସ୍ତୁତ ବାଟୁଳା—1. Lead
Sīsā guḷi(li) balls. ୨ । ସୀସକ ପ୍ରସ୍ତୁତ ବନ୍ଧୁକର (ସୀସା ଗୋଲା[ଳି]—ଅନ୍ୟରୂପ) ଗୋଳା—2. Leaden
ସীসাগোলা सीसागोला balls for gun.

ସୀହୁଣ୍ଡ—ସ. ବି—ସେହୁଣ୍ଡ (ଦେଖ)
Sihunda Sehunda. (See)

ସୁ ( ଧାତୁ )—ସଂ—୧ । ପ୍ରସବ କରିବା—1. To bring forth;
Su (root) produce. ୨ । ଗତି କରିବା—2. To move.

ସୁ—ସଂ. ଅ (ଉପସର୍ଗରେ ଏହା ଅନ୍ୟ ଶବ୍ଦ ପୂର୍ବେ ଯୁକ୍ତ ହୋଇ ନିମ୍ନ
Su ଅର୍ଥମାନ ବୁଝାଏ )—A prefix indicating. ୧ । (କୁ—ବିପରୀତ) ଉତ୍କୃଷ୍ଟ; ଉତ୍ତମ—1. Good; excellent. [ଦ୍ର—ସୁଗନ୍ଧ, ସୁଚରିତ୍ର ।] ୨ । ସୁନ୍ଦର—2. Beautiful. (ଦ୍ର—ସୁଦର୍ଶନ, ସୁବଦନା, ସୁକେଶୀ ।) ୩ । ସାତିଶୟ; ଅତି; ଅତ୍ୟନ୍ତ—3. Very; much. (ଦ୍ର—ସୁଗମ୍ଭୀର, ସୁସ୍ୱାଦ, ସୁକୁମାର ।) ୪ । ସହଜ—4. Easy. (ଦ୍ର—ସୁପ୍ରସବ ।) ୫ । ଅନାୟାସରେ; ସହଜରେ—5. Easily. [ଦ୍ର—ସୁସାଧ୍ୟ, ସୁବଚ, ସୁଲଭ । ] ୬ । ଶୁଭକର; ମଙ୍ଗଳକର—6. Auspicious. [ ଦ୍ର—ସୁଲକ୍ଷଣ ] ୭ । ଉଗ୍ର—7. Excessive; furious. ୮ । ମନୋରମ—8. Charming. [ ଦ୍ର—ସୁଗନ୍ଧ ।] ୯ । ପୁଣ୍ୟ—9. Piety. [ ଦ୍ର—ସୁକୃତ । ] ୧୦ । ପୂଜା—10. Worship. ୧୧ । ନିର୍ଭର—11. Trust. ୧୨ । ଅନୁମତି—12. Permission. ୧୩ । ସମୃଦ୍ଧି—13. Prosperity; increase. ୧୪ । କୃଚ୍ଛ୍ର—14. Difficult. ସ. ବି—ଶୁଭ—Bliss. [ସୁସୁ—ଅନ୍ୟ ଅବ୍ୟୟରୂପ] ଦେ. ଅ(ଧ୍ୱନ୍ୟନୁକରଣ)—୧। ପବନର ସୋଁ ସୋଁ ଜୋରରେ ବହିବାର ଶବ୍ଦ—1. Hissing sound
ସুসু of blowing wind. ୨ । ସାପ ଗର୍ଜିବାର ଶବ୍ଦ—
सू सू 2. Hissing sound of snake. ଦେ.ଚଣ—ଉତ୍ତମ—Good.

ସୁଅ—ଦେ. ବି (ସଂ. ସ୍ରୋତସ୍)—ନଦୀଆଦିର ସ୍ରୋତ—
Sua স্রোত सोता Current of river etc.

(ନଈ) ସୁଅ ଦେବା—ଦେ. କ୍ରି—(ନଦୀ) ସ୍ରୋତଯୁକ୍ତ ହେବା—
(nai) To flow with current.
(ନଈରେ ସୁଅ ପଡ଼ିବା, ସୁଅ ବୋହିବା—ଅନ୍ୟ ବି. ରୂପ)
স্রোতচলা सोता चलना

ସୁଅ ମୁହଁ—ଦେ. ବି (ସଂ. ସ୍ରୋତୋମୁଖ)—୧ । ସ୍ରୋତୋମୁଖ;
Sua muhaṅ ଯେଉଁଠାରେ ସ୍ରୋତର ବେଗ ଅତି ଅଧିକ—
স্রোতের মুখ 1. A place where the current is very
चलता सोत swift. ୨ । (ଲକ୍ଷଣାର୍ଥ) ବିପତ୍ତିଜନକ ସ୍ଥାନ—2. (figurative) Dangerous place.

ସୁଅ ମୁହଁକୁ ପେଲି ଦେବା—ଦେ. କ୍ରି—କୌଣସି ବ୍ୟକ୍ତିକୁ ବିପଦକୁ
Sua muhaṅku peli debā ଠେଲି ଦେବା—To push a
স্রোতের মুখে ঠেলে দেওয়া person to a place of
सोत मुँहमें ढकेलना danger.

ସୁଅର (ଇତ୍ୟାଦି)—ଦେ. ବି—ଶୁଅର ଇତ୍ୟାଦି (ଦେଖ)
Suar (etc) Śuar etc. (See)

ସୁଆଇ—ଦେ. ବି—ସ୍ୱଇ (ଇତ୍ୟାଦି)
Suāi Swāi. (See)

ସୁଆଇଁ—ଦେ. ବି—ସ୍ୱାଇଁ (ଦେଖ)
Suāiṅ Swāiṅ. (See)

ସୁଆଁ—ଦେ. ବି—୧ । ଶୁଆଁ (ଦେଖ)—1. Śuāṅ. (See) ୨ ।
Suāṅ ସୋମଲତା (ଦେଖ)—2. Somalatā. (See) (ଦ୍ର—ଏ ବାବାରେ ସୁଆଁରେ ଚଳେ ସେହୁ ଯାଗ, ଦେବାକୁ ଅବଗାହନରେ ମହାଭାଗ । କୃଷ୍ଣସିଂହ. ମହାଭାରତ. ଶାନ୍ତି ।)

ସୁଆଁ ଚାଉଳ—ଦେ. ବି—୧ । ଧାନାବିଶିଷ୍ଟ ଧଳା ଶସ୍ୟ—
Suāṅ chāuḷa 1. Panicum Frumentacium.
শামা (ଦ୍ର—ଏଥିର ଭାତ ଧାନବ୍ରତ ଉତରେ ଅନ୍ୟ ଶସ୍ୟଗୁଡ଼ି-
साँवाआदि ମାନଙ୍କ ମଧ୍ୟରେ ବଢ଼େ ।) ୨ । ଶୁଆଁ ଚାଉଳ (ଦେଖ)—2. Śuāṅ chāuḷa (See)

ସୁଆଁ ଧାନ—ଦେ. ବି—ଶୁଆଁ ଧାନ (ଦେଖ)
Suāṅ dhāna Śuāṅ dhāna. (See)

ସୁଅଁ ନ(ଲ)ଇ—ଦେ. ବି—୧। ଶ୍ୟାମାଲତା (ଦେଖ)—1. Śyāmā-
Suā̃ na(la)i latā ( See ). ୨। ବୃହତ୍ ଝଙ୍କାଳିଆ
ଶ୍ୟାମଲତା ଅରଣ୍ୟ ବୃକ୍ଷାବିଶେଷ—2. Ichnocarpus
शामालता Frutescens (Haines).

ସୁଅଁରିବା—ପ୍ରାଦେ. ( ସମ୍ବଲପୁର ) କ୍ରି—ଅଙ୍ଗ ଘଷିବା—
Suā̃ribā To tenderly chafe or massage
the body. ଦେ. କ୍ରି—ମସ୍ତକର କେଶକୁ ଅଙ୍ଗୁଠିଦ୍ୱାରା
ଛିର୍ କେଶ୍ କେଶ୍ କରିବା—To divide the hair
of the head into sheaves with the
fingers.

ସୁଅଁ ଲତା—ଦେ. ବି ( ସଂ. ସୋମଲତା ) —୧। ସୋମଲତା (ଦେଖ)
Suā̃ latā 1. Somalatā ( See ) ୨। ସୁଅଁ ନଇ
( ଦେଖ )—2. Suā̃ nai ( See ).

ସୁଅଁଲି—ପ୍ରାଦେ. (କଟକ) ବି—ପୁର ପିଠା—Sandwiched
Suā̃li cake. ପ୍ରାଦେ. ( ଛତିଶଗଡ଼ ) ବି—ସରପୁଲି—
A kind of pastry cake.

ସୁଅଁଶ—ଦେ. ବି ( ସଂ. ସମ, ସଂବେଶ )—୧। ଭୂମିକୁ ସମତଳ
Suā̃śa କରିବା କାର୍ଯ୍ୟ—1. The act of levelling the
समतल ground. ୨। ଜମିକୁ ସମତଳ କରିବା ଓ ଘର, କୋଠା
समतल ଆଦି ତୋଳିବା କାର୍ଯ୍ୟ; ରାଜମିସ୍ତ୍ରୀ କାମ—2. Act of
a digger or a mason. ଦେ. ବିଣ—ସମତଳ
କରି ଯାଇଥିବା (ଜମି)—Levelled (ground).

ସୁଅଁଶ କରିବା—ଦେ. କ୍ରି (ସଂ. ସଂବେଶ)—୧। ଜମିକୁ ସମତଳ
Suā̃śa karibā କରିବା—1. To level the ground.
समतल करना ୨। ମାଟି କାନ୍ଥକୁ କାଟି ସଳଖ କରିବା—2. To
समतल करना straighten a mud wall by
cutting it.

ସୁଅଁଶ ପରୀକ୍ଷା(ଛା)—ଦେ. ବି (ସଂ. ସଂବେଶ+ପରୀକ୍ଷା)—ଯେଉଁ କର୍ମ-
Suā̃śa parikshā(chhā) ଚାରୀ ଘରତୋଳାଳ ମୂଲିଆଙ୍କର ଓ
ତଦାରଖକାର ରାଜ ମିସ୍ତ୍ରୀଙ୍କ କାମ ତଦାରଖ କରେ—An officer
तदारख करनेवाला engaged to supervise the
work of building and house construc-
tion.

ସୁଅଁଶିଆ—ଦେ. ବି. ପୁଂ—ମୂଲିଆ—A day labourer; a
Suā̃śiā labourer engaged to help masons.
(ସୁଅଁଶେଇ, ସୁଅଁଶୀ, ସୁଅଁଶିଆଣୀ—ସ୍ତ୍ରୀ) [ ଦ୍ର—ଏମାନେ ଜମି
मजूर ଖୋଳିବା, ସମତୁଲ କରିବା, ଘର କୁଅଣି କରିବା ଓ ଘର
मजदूर ତିଆରି କରିବାରେ ନିଯୁକ୍ତ ହୁଅନ୍ତି ଏବଂ ରାଜମିସ୍ତ୍ରୀଙ୍କୁ
ସାହାଯ୍ୟ କରନ୍ତି ।]

ସୁଅଁଶିବା—ଦେ. କ୍ରି—ଭୂମିକୁ ହାଣି, ଚାଞ୍ଛି ସମତୁଲ କରିବା—
Suā̃śibā To level up a ground.

ସୁଅଗ (ଇତ୍ୟାଦି)—ଦେ. ବି (ସଂ. ସୌଭାଗ୍ୟ)—ସୁହାଗ ଇତ୍ୟାଦି
Suāga (etc) (ଦେଖ)—Suhāga etc. (See) [ ଦ୍ର—
ଦୁଅଗଲ୍ଲ ଶାଳୀ ବନେ କ ରଙ୍ଗ, ସୁଅଗ କ ଥିବା ଜନେ
କ ସଙ୍ଗ ? ଉପେନ୍ଦ୍ର ଭଞ୍ଜ, ସଙ୍ଗୀତ ।]

ସୁଅଗ ବୁଡ଼—ପ୍ରାଦେ (ଯାଜପୁର ଓ ଗଡ଼ଜାତ ) ବି—ବାଳିକାମାନଙ୍କର
Suāga burḍ ଓଷା ଓ ପୂଜା ବିଶେଷ—A kind of fast-
ing and worship practised by girls.
ସୁଅଗ ଦ୍ଵାନ, ସୁଅଗ ସିନା[ନ୍ନା]ନ, ସୁଅଗ ସ୍ନାହାନ, ସୁଅଗ ସ୍ନାହା } ଅନ୍ୟରୂପ [ ଦ୍ର—ପିଲା ଦିନରୁ ଶାଶୁ
ଘରକୁ ଯିବା ପର୍ଯ୍ୟନ୍ତ କନ୍ୟା-
ମାନେ ଆଶ୍ୱିନ କୃଷ୍ଣ ଅଷ୍ଟମୀ
( ଦୁର୍ଗାସ୍ନା ଓଷା )ଠାରୁ ମହା-
ଅଷ୍ଟମୀ ପର୍ଯ୍ୟନ୍ତ ଗ୍ରାମ ପାହାନ୍ତା ନଦୀଆଦି ସ୍ଥାନରେ ଜଳରେ
ସ୍ନାନ କରି ସ୍ନାନଘାଟର ବାଲିରେ ସାତଗୋଟି ବାଲିକା
ମୂର୍ତ୍ତି କରି ଗୌରୀଙ୍କୁ ପୂଜା କରନ୍ତି ଓ ନୈବେଦ୍ୟ ସବୁ
ସାଙ୍ଗରେ ଯାଇଥିବା ପିଲମାନଙ୍କୁ ବାଣ୍ଟନ୍ତି । ସେମାନେ ଏହି
୧୫ ଦିନ ଗୀତ ବୋଲି ବଡ଼ ଆନନ୍ଦରେ ଥାଆନ୍ତି ଓ ମାଛ,
ବାଇଗଣ, ଜହ୍ନି ଆଦି ଖାଆନ୍ତି ନାହିଁ । ଶେଷ ଦିନ
(ଦୁର୍ଗାଷ୍ଟମୀରେ) ଭୋଗ ହୋଇଥିବା ନଡ଼ିଆକୁ ସାଙ୍ଗ ପିଲାଙ୍କୁ
ବାଣ୍ଟନ୍ତି ଓ ସ୍ନାନ କରିବା ସମୟରେ ଏହି ଗୀତ ବୋଲନ୍ତି—
'ବୁଡ଼, ବୁଡ଼, ଏହି ବୁଡ଼କ ସୁଅଗ ବୁଡ଼
ପର୍ବତଶିଖରୁ । ମହୁ ବରଷେ !
ଖଣ୍ଡପିଠା ଅର ଦାଅରା ଉଣେ—ଇତ୍ୟାଦି ।'
ଓଷା କରିଥିବା ବାଳିକାମାନେ ଶେଷ ଦିନ ଭାତ ନ
ଖାଇ ଜଳଖିଆ ଖାଆନ୍ତି । ସେମାନେ ଚିରସୌଭାଗ୍ୟବତୀ ଓ
ସ୍ୱାମୀପ୍ରିୟା ହେବା ପାଇଁ ଏହି ବ୍ରତ ପାଳନ କରନ୍ତି । ]

ସୁଅଗା—ଦେ. ବି. ଓ ବିଣ—ସୁହାଗା ( ଦେଖ )
Suāgā Suhāgā ( See )

ସୁଅଗିଆ(ହା)—ଦେ. ବିଣ. ପୁଂ—ସୁହାଗିଆ ( ଦେଖ )
Suāgiā(hā) Suhāgiā ( See )
( ସୁଅଗୀ, ସୁଅଗେଇ[ଣୀ]—ଅନ୍ୟରୂପ )

ସୁଅଗିଣୀ—ଦେ. ବଣ ସ୍ତ୍ରୀ—ସୁହାଗିଣୀ ( ଦେଖ )—Suhāgini
Suāginī ( ସୁଅଗୀ—ପୁଂ ) ( See )

ସୁଅଗୀ—ଦେ. ବଣ. ପୁଂ. ଓ ସ୍ତ୍ରୀ—ସୁହାଗୀ ( ଦେଖ )—Suhāgī
Suāgī ( See ) [ ଦ୍ର—କୃଷ୍ଣର ନଖ ଶତ ଲାଗେ । ନ ପୁଣ
ହୋଇଛି ସୁଅଗୀ—ଜଗନ୍ନାଥ. ଭାଗବତ । ]

ସୁଅଙ୍ଗ—ଦେ. ବି ( ସଂ. ଶୋଭାଙ୍ଗ=ଶୋଭା ଯାର ପ୍ରଧାନ ଅଙ୍ଗ ହିନ୍ଦୀ
Suāṅga ସଂ, ହିନ୍ଦୀ, ସଂଗ, ସଙ୍ଗ, ସ୍ୱାଙ୍ଗ )—୧। ଅଭିନୟରେ
स्, सङ् ଓ ଯାତ୍ରାଦିରେ କୌଣସି ବ୍ୟକ୍ତିର ବେଶ ଆଦି ଧାରଣ
स्वाँग କରିହେବା ଅଭିନୟ ଓ ନାଚ; ଲୋକପ୍ରିୟ ହାସ୍ୟରସ
ଜନାତ୍ମିକ ଅଭିନୟ—1. Assuming the dress
of any character in a play or dance;
popular farce. ୨। ନାଟକର ବ୍ୟକ୍ତିଙ୍କ ରୂପ ଧାରଣ
କରି ନୃତ୍ୟାଦି କରିବା ଅଭିନେତା—2. A mime. [ଦ୍ର
—ଜଣେ ଜଣେ କୋଟିଏ ଯୋଟିଏ ସୁଅଙ୍ଗ—[illegible]
କରିବାର ।] ୩। ପ୍ରହସନ—3. Farce. ୪। [illegible]
ଦେଖାଇବା ଅଭିନେତାମାନଙ୍କର ଖେଳ—4. Pantomi-

me. ୫ । କୌଣସି ବ୍ୟକ୍ତିର ବେଶ ଧରି କରାଯିବା ଅଭିନୟ—5. Theatrical acting of a person. ୬ । ଥଟ୍ଟା ତାମସା; ଚମତ୍କାରିତା; ଛଳ—6. Wit; joking; sport. ୭ । ( ଲକ୍ଷଣାର୍ଥ ) ଆଡ଼ମ୍ବରଯୁକ୍ତ କାର୍ଯ୍ୟ; ଘନଘଟା; ଅରମ୍ଭ—7. Ado; grand display. [ ଦ୍ର—ଯେଉଁ ଅଭିନୟରେ ସୁଅଙ୍ଗ ଅଛି ତାହାରେ, ତାକୁ ଓଡ଼ିଶାରେ 'ଯାତ୍ରା' ବା 'ଲୀଳା' ବୋଲାଯାଏ । ଯଥା—କୃଷ୍ଣଲୀଳା; ଭରତଲୀଳା, ରାମଲୀଳା ]

ସୁଅଙ୍ଗ କରିବା(କାଢ଼ିବା)—ଦେ. କ୍ରି—୧ । କୌଣସି ବ୍ୟକ୍ତିର ଚରିତ୍ର Suāṅga karibā(kāṛhibā) ଅଭିନୟ କରିବା ପାଇଁ ସେହି ସଙ କରা ବ୍ୟକ୍ତିର ବେଶ ଧାରଣ କରିବା—1. To ସ୍वाँग करना, स्वाँग निकालना assume the garb or mask of any character in a pantomime.
ସୁଅଙ୍ଗ ହେବା,
ସୁଅଙ୍ଗ ସାଜିବା, } ଅନ୍ୟରୂପ
ସୁଅଙ୍ଗ ବାହାର କରିବା
୨ । ସୁଅଙ୍ଗ ଅଭିନୟ ଯାତ୍ରା କରିବା—2. To act a pantomime. ୩ । (ଲକ୍ଷଣାର୍ଥ) ବାହ୍ୟାଡ଼ମ୍ବର ବା ଆଡ଼ମ୍ବର କରିବା—3. To make much ado about nothing. ୪ । (ଲକ୍ଷଣାର୍ଥ) ଗୋଟାଏ ନୂଆ କଥା ଲୋକାକର୍ଷକ କର୍ମ କରିବା—4. To do some thing new, so as to attract people.

ସୁଅଙ୍ଗିଆ—ଦେ. ବଣ. ପୁଂ—୧ । ସୁଅଙ୍ଗପ୍ରିୟ—1. Fond of Suāṅgiā pantomime. ୨ । ବାହ୍ୟାଡ଼ମ୍ବର ପ୍ରିୟ—2. Fond (ସୁଅଙ୍ଗିଆଣୀ—ସ୍ତ୍ରୀ) of ado or display. ୩ । ଛଇଳ; ରଙ୍ଗବାବୁ स्वाँगकरनेवाला ରହସ୍ୟପ୍ରିୟ—3. Sportive; ଆମুদে, ভাঁড় दिल्लगी बाज़ witty; humorous.

ସୁଅଙ୍ଗୀ—ଦେ. ବଣ. ପୁଂ ଓ ସ୍ତ୍ରୀ—ସୁଅଙ୍ଗିଆ (ଦେଖ) Suāṅgī Suāṅgiā. (See)

ସୁଆଦ—ଦେ. ବି (ସ. ସ୍ୱାଦ)—୧ । ରୁଚି; ସ୍ୱାଦ—1. Taste. Suāda (ଉ—ଅଟ୍ଟାଳ ଭିତରେ ଦାଳି ସୁଆଦ ଦୂରିଲେ । ଫାଗୀ. ସাদ ନଳ ଚରିତ ।) ୨ । ସୁସ୍ୱାଦୁ; ମଧୁର ସ୍ୱାଦ—2. Sweet स्वाद taste. (ଉ—ଚୂଅବଣ୍ଡ କୁଆଁ ତଳୁଷ କ୍ଷୀରରେ ସୁଆଦ ଥାଏ କି ଅଛି ? ଉପେନ୍ଦ୍ର. ସଙ୍ଗୀତ ।) ୩ । ( ଲକ୍ଷଣାର୍ଥ ) ମନୋରମତା—3. (figurative) Agreeableness; charm. ଦେ. ବଣ—୧ । ସୁସ୍ୱାଦୁ—1. Sweet to the taste. ୨ । ( ଲକ୍ଷଣାର୍ଥ ) ମନୋରମ—2. ( figurative ) Charming; agreeable. (ଉ—ପ୍ରୀତି ଥିଲେ ସୁଆଦ ଲୋ । ଉପେନ୍ଦ୍ର. ସଙ୍ଗୀତ ।)

ସୁଆଦ ଚାଖିବା—ଦେ. କ୍ରି—ଜିହ୍ୱାରେ କୌଣସି ବସ୍ତୁର ସ୍ୱାଦ ମାତ୍ର Suāda chākhibā ଅନୁଭବ କରିବା—To taste anything; to have a taste of anything. ଚাখা स्वाद चखना

ସୁଆଦ ପାଇବା—ଦେ. କ୍ରି—କୌଣସି ବସ୍ତୁର ସ୍ୱାଦ ଅନୁଭବ କରିବା—Suāda pāibā To have the experience of স্বাদ পাওয়া स्वादपाना the taste of anything.

ସୁଆଦ ବାରିବା—ଦେ. କ୍ରି—କୌଣସି ବସ୍ତୁ ସୁସ୍ୱାଦୁ କି ଅସ୍ୱାଦୁ ଏହା Suāda bāribā ଜିହ୍ୱାଦ୍ୱାରା ପରୀକ୍ଷା କରିବା—To examine স্বাদচাখা the taste of anything by the tongue. चखकर देखना

ସୁଆଦ ଲାଗିବା—ଦେ କ୍ରି—ସୁସ୍ୱାଦୁ ବୋଧ ହେବା—Suāda lāgibā To taste sweet; to seem স্বাদ লাগা स्वाद् लगना charming.

ସୁଆଦିଆ—ଦେ. ବଣ—୧ । ସ୍ୱାଦ ବିଶିଷ୍ଟ Suādiā 1. Having a taste. (ସୁଆଦୀ—ଅନ୍ୟରୂପ) ୨ । ମଧୁର; ସୁସ୍ୱାଦୁ—স্বাদু सुस्वादु 2. Sweet; delicious.

ସୁଆଦୁ—ଦେ. ବି ( ସ. ସ୍ୱାଦୁ )—ସ୍ୱାଦ—Taste. ଦେ. ବଣ (ସଂ. Suādu স্বাদ सुआद् ସ୍ୱାଦ )—ସୁଆଦିଆ—Sweet. স্বাদু सुस्वादु

ସୁଆଧୀନ—ପ୍ରାଦେ. ( ଲିଖ୍ୟ ) ବଣ—ସ୍ୱାଧୀନ—Suādhīna Free; independent.

ସୁଆନନା—ଦେ. ବଣ—ସୁବଦନା; ସୁମୁଖୀ—( a woman ) Having a charming or beautiful face. Suānanā ସুবদনী [ ଉ—ସୁଆନନା ଚନ୍ଦ୍ରରେ, ଜନନୀ ଦେଖି ଅଣ୍ଟରେ— सुआननी ଫାଗୀ. ଦେବୀସ୍ତୁତି । ]

ସୁଆ(ଆଁ) ବାଳି—ଦେ. ବି ( ସଂ. ଶୁକ+ବାଳି )—ସୁଆଁ ବାଳି Suā(āṅ) bāḷi ( ଦେଖ )—Suāṅ bāḷi ( See ) ଶুয়া পোকা सूआ ( ସୁଅ[ଆଁ]ବାଳି[ଳି]ଆ—ଅନ୍ୟରୂପ )

ସୁଆ(ଆଁ) ଭାତ—ଦେ. ବି—ଶ୍ୟାମାକ ଧାନର ଅନ୍ନ—The cooked Suā(āṅ) bhāta rice prepared from the grains শ্যামা চালের ভাত of Panicum Frumentacium साँवाँ भात [ ଉ—ଅଗଣା ନବଘନରେ ତୁଳେ ସୁଆ ଭାତ, ଦେଇଣ ସ୍ୱାଦ କଲେ ରୁଆଜ ସୁଜାତ—କୃଷ୍ଣସିଂହ, ମହାଭାରତ. ବନ । ]

ସୁ(ସୋ)ଅ(ହା)ମ—ଦେ. ବି ( ସଂ. ଶାଲ୍ମଳ )—ପୂର୍ବ ଓ ପଶ୍ଚିମ Su(so)ā(hā)ma ଭାରତରେ ଜନ୍ମୁଥିବା କମ୍ପାଦ ବର୍ଗର ସଂ. ନାମ—ରୋହିତକ, ଏକପ୍ରକାର ଜଙ୍ଗଲ କାଠ ଗଛ—ରୋହୀତକ, ରୋହୀ, ରୋହଣ, A timber wood; Tecoma ଦାଡ଼ିମ ପୁଷ୍ପକ, ପ୍ଳୀହ ଶତ୍ରୁ, Andulata; Andersonia ଦାଡ଼ିମଚ୍ଛଦ, ରକ୍ତପୁଷ୍ପ, Rohitaka. [ ଦ୍ର—ଏହାର କାଣ୍ଡ ମାଂସଦଳନ, ସକୃଦ୍ଭେଦ, ସିଧା ଓ ବଡ଼ ହୋଇଥାଏ । ଏଥିର କୂଟଶାଲ୍ମଳି, କୂଟଶାଲ୍ମଳ, ଗୋଟିଏ ଡେଙ୍ଗରେ ୫ ଠାରୁ ୬ ବିରାଗନ୍ଧ, ବିଷ୍ଣୁବର୍ଣ୍ଣ, ଯୋଡ଼ା ପର୍ଣ୍ଣିକା ପତ୍ର ଥାଏ । ଏହାର ଶାଲ୍ମଳକ । ଫଳ ୧।୨ ଇଞ୍ଚ ଲମ୍ବ ଓ ଖାଡ଼ରେ ରোহিতক, रोहना, ୪ ଖଣ୍ଡ ହୋଇ ଫାଟିଯାଏ । ଏଥିର

କଡାର, ରୋହାଣ'] ସାଳ ଚେପ୍ଟା ଓ ପକ୍ଷଯୁକ୍ତ । ଏହାର
ରୋହିତା କାଠ ଶକ୍ତ ଥିବାରୁ ଲୋକେ ଏଥିରେ
ଲେ· ମୁକ୍ତମୋକୁଗଚେଟ୍ସୁ କବାଟ, ଶଗଡ଼ ଆଦି ତିଆରି କରନ୍ତି ।
ସାଧାରଣତଃ ଏହାର ମଞ୍ଜ କାଠ ନାଲି । କିନ୍ତୁ ଏକ ଜାତିର
କାଠର ମଞ୍ଜ ଧଳା । ଏଥିର ଛେଲିରୁ ଲଇ ହୁଏ । ଏହାର
ଛେଲି କଟୁ କଷାୟ ରସ, ପ୍ଲୀହାନାଶକ, ଯକୃତକର ଓ
ରକ୍ତ ପରିଷ୍କାରକ ଏବଂ ଯକୃତ୍, ଗୁଳ୍ମ, କୃମି, ବ୍ରଣ, ନେତ୍ର-
ରୋଗ ଓ ଉଦର ରୋଗରେ ବିଶେଷ ଉପକାରୀ । ]

ସୁଆର(ର)—ଦେ. ବି—୧ । ସବାର (ଦେଖ)—1. Sabār (See)
Suār(ra) ୨ । ଶୁଅର (ଦେଖ)—2. Śuar (See)

ସୁଆର—ଦେ. ବି. ପୁଂ (ସଂ. ସୂପକାର)—୧ । ଏକଜାତୀୟ ଅଶ୍ରୋତ୍ରିୟ
Suāra ପାଚକ ବ୍ରାହ୍ମଣ (ପୁରୀ ବଡ଼ଦେଉଳରେ ଏମାନେ ଭୋଗ
সোয়ার ପ୍ରସ୍ତୁତ କରନ୍ତି)—A kind of low Brāhmaṇa.
सूपकार [ ଦ୍ର—ପଣ୍ଡା, ପୂଜାହାରୀ, ସୁଆର ବା ଦେଉଳଆ ବ୍ରାହ୍ମଣ
ଏକ ଶ୍ରେଣୀର ଅନ୍ତର୍ଗତ । ଶ୍ରୋତ୍ରିୟ ବ୍ରାହ୍ମଣଙ୍କ ସଙ୍ଗେ
ଏମାନଙ୍କର ବୈବାହିକ ସମ୍ପର୍କ ହୁଏ ନାହିଁ—କୃପାସିନ୍ଧୁ.
ଉତ୍କଳ ଇତିହାସ । ] ୨ । ରାନ୍ଧୁଣି; ସୂପକାର; ପାଚକ—
2. Cook. [ ଦ୍ର—ବିପ୍ରଙ୍କ ବୋଇଲେ ତେଣ । ସୁଆର
ବ୍ରାହ୍ମଣ, ପରସିଲେ ଦିଶ ନାହିଁ ତେଣକୁ ଅପଣ—କୃଷ୍ଣସିଂହ.
ମହାଭାରତ. ' ବିରାଟ । ] ୩ । ରାଜାଙ୍କ ଖାଦ୍ୟ ଓ
ଦେବତାଙ୍କ ଭୋଗ ପାକକାରୀ ସେବକ—3. A cook
of a king or an Idol. ୪ । (ଅଶ୍ୱବାର) ଅଶ୍ୱା-
সওয়ার ରୋହୀ; ସବାର—4. Rider. [ ଦ୍ର—ଲକ୍ଷ ଘୋଡ଼ା
सवार ନବଘାଡ଼ ସୁଆର, ପ୍ରଚଣ୍ଡାକଲେ ପଥେ ଗୁଳଜାର —
ଅଜ୍ଞମନ୍ତ୍ରୀ ଶ୍ୟାମସୁନ୍ଦରସିଂହାର. ବିଦଗ୍ଧଚିନ୍ତାମଣି । ]

ସୁଆର ପାଳି—ଦେ.ବି—ରାଜା ଓ ଦେବତାଙ୍କ ପାଇଁ ଅନ୍ନାଦି ପାକ କରିବା
Suāra pāḷi କ୍ରମରେ ସେବକର ନିର୍ଦ୍ଦିଷ୍ଟ ଦିନ—The turn
সোয়ার পালা of a cook to cook on certain days
सूपकार पारी for a Raja or Idol.

ସୁଆର ପିଠା—ବି—ପୁରୀ ବଡ଼ଦେଉଳରେ ପ୍ରତିଦିନ ସନ୍ଧ ଧୂପରେ
Suāra piṭhā ଭୋଗ ହେବା ନାନାପ୍ରକାର ପିଠା ମଧ୍ୟରେ
ବଡ଼ ପିଠା—A cake offered to Lord Jaga-
nnātha at evenving daily.

ସୁଆର ବରତନ—ଦେ. ବି ( ସଂ. ସୂପକାର+ହି. ବର୍ତ୍ତନ )—
Suāra baratana ସୂପକାରର ନିର୍ଦ୍ଦିଷ୍ଟ ପାରିଶ୍ରମିକ—The
সোয়ারের বেতন fixed scale of remuneration of a
सूपकार वेतन cook. [ଦ୍ର—ପୁରୀର ଜଗନ୍ନାଥ ଓ ଭୁବନେ-
(ସୁଆର ବର୍ତ୍ତନ—ଅନ୍ୟରୂପ) ଶ୍ୱରର ଲିଙ୍ଗରାଜ ମହାପ୍ରଭୁଙ୍କ ଅନ୍ନ-
ବ୍ୟଞ୍ଜନାଦି ରାନ୍ଧିବା ପାଇଁ ସୁଆରମାନଙ୍କର ପାରିଶ୍ରମିକର
ରେଟ୍ ପୂର୍ବ ବନ୍ଧ ଅନୁସାରେ ନିର୍ଦ୍ଦିଷ୍ଟ ଅଛି । ]

ସୁଆର ସେବକ—ଦେ. ବି—ଦେବତାଙ୍କର ପାଚକ ଭୃତ୍ୟ—
Suāra sebaka The cook of an Idol.
সোয়ার সেবক सूपकार सेवक

ସୁଆର ସେବା—ଦେ ବି—ଦେବତାଙ୍କ ଅନ୍ନପାକ କରିବାରୂପ ସେବା—
Suāra sebā The service of a cook of an Idol.
সোয়ার সেবা सूपकार सेवा

ସୁଆର ହେବା—ଦେ. ବି—ସବାର ହେବା (ଦେଖ)
Suāra hebā Sabāra hebā (See)

ସୁଆରି—ଦେ. ବି ଓ ବିଣ—ସବାରି (ଦେଖ)
Suāri Sabāri (See)

ସୁଆ(ଆଁ)ରି—ଦେ. ବି (ସଂ. ସୂପକାର)—ଏକପ୍ରକାର ପୂର ପିଠା—
Suā(ā̃)ri A kind of cake with minced sweets
পুরপিঠা or pulse inside. ପ୍ରାଦେ. (ସମ୍ବଲପୁର) ବି—
पिरकिया ପତଳା ଚାକଟି—A kind of thin flat sweet
pastry bread fried in ghee.

ସୁଆ(ଆଁ)ରି[ଳି]ବା—ଦେ. କ୍ରି (ସଂ. ସ୍ତୋମ=ଗଦା)—୧ । ତୁଳାକୁ
Suā(ā̃)ri[ḷi]bā ପିଞ୍ଜିବା ବା ଭଣିବା ଦେବାରୁ ଅଙ୍ଗୁଠିଦ୍ୱାରା
তুলা পেঁজা ତହିଁର ଡଳୁମାନଙ୍କୁ ପୃଥକ୍ ପୃଥକ୍ କରିବା—
नुमना, उत्तेजना 1. To card coarse cotton with the
fingers. [ ଦ୍ର—ଏପରି କଲେ ତୁଳାରୁ ମଇଳା ଓ
ଖଦଡ଼ାଅଂଶପାକ ବାହାରି ଯାଏ ଓ ତାହା ଭଣିବାକୁ ସହଜ
ହୁଏ । ] ୨ । ମୁଣ୍ଡର ବାଳକୁ ଅଙ୍ଗୁଠିଦ୍ୱାରା କେରା କେରା
କରି ଅଲଗା କରିବା—2. To separate the hair of
the head into sheaves with the fingers.

ସୁଆରୁଣୀ—ଦେ. ବି. ସ୍ତ୍ରୀ—୧ । ରାନ୍ଧୁଣୀ—1. A female cook.
Suāruṇī ୨ । ସୁଆରର ସ୍ତ୍ରୀ—2. Wife of a cook.
সোয়ারিনী सूपकारनी (ସୁଆର—ପୁଂ)

ସୁଆ(ଆଁ)ରେ(ଳେ)ଇବା—ଦେ. କ୍ରି—ସୁଆରିବା (ଦେଖ)
Suā(ā̃)re(ḷe)ibā Suāribā (See)

ସୁଆଲ (ଇତ୍ୟାଦି)—ବେଦେ. ବି(କଟକଅ)—ସବାଲ ଇତ୍ୟାଦି (ଦେଖ)
Suāl (etc) Sabāl etc (See) [ ଦ୍ର—ସୁଆଲରେ
ଜବାବ ଦେଲ—ଫକୀରମୋହନ. ଛଅ ମାଣ ଆଠ ଗୁଣ । ]

ସୁଆଲି—ବେଦେ. ବି(କଟକଅ)—ସବାଲି (ଦେଖ)—Sabāli (See)
Suāli (ସୁଅଲି—ଅନ୍ୟରୂପ)

ସୁଆ(ଆଁ)ଳି—ଦେ. ବି—ଏକପ୍ରକାର ପୂର ଥିବା ପିଠା—A kind of
Suā(ā̃)ḷi sandwiched cake. ପ୍ରଦେ. (ଗଞ୍ଜାମ)
একপ্রকার পুর পিঠা ବି—ବାଙ୍କ ଚାକଳି—A sweet cake
पिरकिया without sandwich inside it.

ସୁଆଳି ଦେବା—ପ୍ରାଦେ. (ବାଲେଶ୍ୱର ପାଟଣା) କ୍ରି—ଅଙ୍ଗମର୍ଦ୍ଦନ—
Suāḷi debā To massage or chafe the limbs.

ସୁଆଳି ଲତା—ଦେ. ବି (ସଂ. ସୁବହା)—ଔଷଧରେ ବ୍ୟବହୃତ ଲତା-
Suāḷi latā ବିଶେଷ; ଗୋଧାପଦୀ—A kind of creeper
সুবহা used in medicine. [ ଦ୍ର—ଏହାର
गोधापदी लता ସଂସ୍କୃତ ନାମ 'ଗୋଧାପଦୀ', 'ସୁବହା'—ଡକ୍ଟର.
ହରେକୃଷ୍ଣ ମିଶ୍ର. ଦ୍ରବ୍ୟଗୁଣ । ]

ସୁଆସୀ—ପ୍ରାଦେ. (ଗଞ୍ଜାମ) ବି—ସଧବା ସ୍ତ୍ରୀ—A housewife
Suāsī with her husband living.
(ସୁଅସେଣୀ—ଅନ୍ୟରୂପ)

ସୁଇ—ପ୍ରାଦେ· ବ—୧ । ( ବାଲେଶ୍ୱର ପ୍ରାନ୍ତ ଓ ସମ୍ବଲପୁର ) ଛୁଞ୍ଚି—
Sui 1. Needle. ୨ । ( ବାଲେଶ୍ୱର ପ୍ରାନ୍ତ ) କୁମ୍ଭାର—
2. Potter. ( ଭୂ—ସୁଇ ସୁନାର, ସବୁଠଉଁ ଠକ
ବଡେ଼ଇ କମାର – ପ୍ରବଚନ । ) ୩ । ( ବାମଣ୍ଡା ) ପକ୍ଷୀ
ବିଶେଷ—3. The name of a bird. ୪ । (ବାଲ-
ଙ୍ଗିର ପାଟଣା) ସୁକି (ମୁଦ୍ରା)—4. A four-anna bit.
(ଭୂ—ସୁଇ ସୁଧ=ସୁକି ସୁଧ ।)

ସୁଇଚ୍—ବୈଦେ. ବି ( ଇଂ. ସ୍ୱିଚ୍ )—କୌଣସି କଳ (ଯଥା—
Suich ବୈଦ୍ୟୁତିକ ଆଲୋକ, ପଙ୍ଖା ) ଆଦିକୁ ନିୟନ୍ତ୍ରିତ କରିବା
স্বইচ পାଇଁ ତାହା ସଙ୍ଗେ ଲାଗିଥିବା ଗୁବ ( ଏହାକୁ ଟିପି ଦେବା
स्वीच ମାତ୍ରକେ ଏଥି ସଂପୃକ୍ତ ଆଲୁଅ ଜଳି ଉଠେ ବା ପଙ୍ଖା
(ସ୍ୱିଚ୍—ଅନ୍ୟରୂପ) ଚଳେ । ଅନ୍ୟ ଆଡ଼କୁ ଟିପି ଦେଲେ କଳର
ଗତି ବନ୍ଦ ହୁଏ)—A switch of an electric
installation. [ଦ୍ର—ଏହି ଇଂରାଜୀ ଶବ୍ଦ ସଙ୍ଗେ ଅନେକ-
ଗୁଡ଼ିଏ ଅନ୍ୟ ଇଂରେଜୀ ଶବ୍ଦ ମଧ୍ୟ ଭାଷାରେ ବ୍ୟବହୃତ
ହେଲାଣି । ଯଥା—ସୁଇଚ୍ ବୋର୍ଡ଼୍ (Switch board),
ସୁଇଚ୍ ଲାଇଟ୍ (Switch light), ସୁଇଚ୍ ବେଲ୍ (Switch
bell ), ସୁଇଚ୍ ରୋପ୍ ( Switch rope ) ]

ସୁଇଚ୍ କ(ମା)ରିବା—ଦେ· କ୍ରି (ଇଂ. ସ୍ୱିଚ୍)—ବୈଦ୍ୟୁତିକ ଆଲୁଅ ବା
Suich ka(mā)ribā ଅନ୍ୟ ଯନ୍ତ୍ରକୁ ଚଳାଇବା ବା ବନ୍ଦ କରିବା
( ସ୍ୱିଚ୍ କରିବା—ଅନ୍ୟରୂପ ) ପାଇଁ କଳ୍ପମାନ ଗୁବରେ ହାତ
স্বইচ্ করা ମାରିବା—To switch the key of any
स्वीच करना electric light, fan etc.

ସୁଇଜର ଲ(ଲ୍ୟା)ଣ୍ଡ୍—ଦେ. ବି (ନାମ) (ଇଂ. ସ୍ୱିଜର୍ ଲାଣ୍ଡ୍)—
Suijer la(lā)nd ଆଲ୍ପସ୍ ପର୍ବତର ଉତ୍ତରରେ ଥିବା ୟୁରୋପର
সুইজর ল্যাণ্ড পାର୍ବତ୍ୟ ରାଜ୍ୟବିଶେଷ ଓ ୟୁରୋପର କ୍ଷୁଦ୍ରତମ
स्विट्ज़र लैंड ରାଜ୍ୟ—Switzerland. [ଦ୍ର—ଏହି ରାଜ୍ୟର
ସ୍ୱିଜର୍ ଲ(ଲ୍ୟା)ଣ୍ଡ୍ } 'ଜେନେଭା' ନଗର ଘଡ଼ି ଓ ଘଣ୍ଟା ତିଆରି
ସୁଇଟ୍‌ଜର୍ ଲ(ଲ୍ୟା)ଣ୍ଡ୍ } କରିବାରେ ପୃଥିବୀରେ ପ୍ରସିଦ୍ଧ । ଏହି ରାଜ୍ୟ
ସ୍ୱିଟ୍‌ଜର୍ ଲ(ଲ୍ୟା)ଣ୍ଡ୍ } ଜର୍ମାନୀର ଦକ୍ଷିଣ ଓ ଇଟାଲୀର ଉତ୍ତରରେ
ଅବସ୍ଥିତ । ଏଥିର ପଶ୍ଚିମରେ ଫ୍ରାନ୍ସ ଓ ପୂର୍ବରେ
ଅଷ୍ଟ୍ରିୟା । ବର୍ଣ୍ଣ (Berne) ଏହାର ରାଜଧାନୀ । ଏ
ଦେଶବାସୀଙ୍କୁ ସୁଇସ୍ (Swiss) ବୋଲାଯାଏ । ଏଥିରେ
ପ୍ରଜାତନ୍ତ୍ର ଶାସନ ପ୍ରବର୍ତ୍ତିତ । ଏହାର ମନୋହର ଆଲ୍ପସ୍
ପର୍ବତର ଓ ହ୍ରଦମାନଙ୍କ ଦୃଶ୍ୟ ଦେଖିବା ଲାଗି ବହୁ
ସଂଖ୍ୟକ ଯାତ୍ରୀ ପ୍ରତିବର୍ଷ ଏଠାକୁ ଆସନ୍ତି ।]

ସୁଇଝିବା—ପ୍ରାଦେ (ଲହଥା) କ୍ରି—ସୁଝିବା—
Suijh-bā To repay.

ସୁଇଡ—ବୈଦେ. ବି (ନାମ) (ଇଂ. ସ୍ୱିଡ)-ସୁଇଡେନ୍ ଦେଶବାସୀ—
Suid সুইড্ स्वीड A Swede.
(ସ୍ୱିଡ—ଅନ୍ୟରୂପ)

ସୁଇଡିଶ—ବୈଦେ· ବିଣ—( ଇଂ. ସ୍ୱିଡିଶ୍ )—ସୁଇଡେନ୍ ଦେଶ
Suidis ସମ୍ବନ୍ଧୀୟ—Swedish.
সুইডিশ্ स्वीडिश

ସୁଇଡେନ୍—ବୈଦେ· ବି (ନାମ) (ଇଂ)—ଇଉରୋପର ଶୀତପ୍ରଧାନ
Suiden ରାଜ୍ୟ ବିଶେଷ—Sweden. [ଦ୍ର – ଏହା ଇଉରୋପର
সুইডেন্ ଉତ୍ତର-ପଶ୍ଚିମ ପ୍ରାନ୍ତସ୍ଥ ନରୱେ ରାଜ୍ୟର ପୂର୍ବରେ
स्वीडेन ଅବସ୍ଥିତ । ଏହାର ପଶ୍ଚିମରେ ନରୱେ, ଉତ୍ତରରେ
ଲାପଲାଣ୍ଡ୍, ପୂର୍ବରେ ବାଲ୍‌ଟିକ୍ ଓ ବୋଥିନିଆ ଉପସାଗର
ଏବଂ ଦକ୍ଷିଣରେ ବାଲ୍‌ଟିକ୍ ଉପସାଗର । ଏହା ରାଜାଙ୍କ
ଦ୍ୱାରା ଶାସିତ । ଏଥିର ପ୍ରଧାନ ନଗର ଷ୍ଟକ୍‌ହଲମ୍ ।]

ସୁଇଲ୍—ପ୍ରାଦେ( ବଲଙ୍ଗିର ପାଟଣା )ବି—୧ । ଧାନ ବୁହାଇ ନେବାର
Suil ଆଧାର—1. A receptacle for carrying paddy.
୨ । ଝାଉଁ ଗଛ—2. The stem of a jute
plant shorn of its fibres.

ସୁଇସ୍—ବୈଦେ· ବିଣ· ( ନାମ ) ( ଇଂ. ସ୍ୱିସ୍ )—ସୁଇଜର୍‌ଲାଣ୍ଡର
Suis ଅଧିବାସୀ – A Swiss. ଦେ. ବିଣ—ସୁଇଜର୍‌ଲାଣ୍ଡ୍ ଦେଶ
(ସ୍ୱିସ୍—ଅନ୍ୟରୂପ) ସମ୍ବନ୍ଧୀୟ—Swiss.
সুইস্ स्वीस

ସୁଉ— ଦେ· ଅ ( ଧ୍ୱନ୍ୟର୍ଥ )—ସୁ ସୁ (ଦେଖ)
Su-u Su su. (See)
( ସୁଏ ସୁଉ—ଅନ୍ୟରୂପ )

ସୁଉଁ—ଦେ. ବି (ଧ୍ୱନ୍ୟର୍ଥକ)—ସୁଁ ସୁଁ (ଦେଖ)
Su-uñ Suñ suñ. (See)
( ସୁଅଁ ସୁଇଁ—ଅନ୍ୟରୂପ )

ସୁଉକା(କି) (ଇତ୍ୟାଦି)—ଦେ. ବି (ସଂ· ଶୂକ)—ସିଉକା ଇତ୍ୟାଦି
Su-ukā(ki) (etc) (ଦେଖ)—Siukā etc. (See)

ସୁଉକାର (ଇତ୍ୟାଦି)—ଗ୍ରା· ବି (ସଂ. ସୀତ୍କାର)—ସୀତ୍କାର ଇତ୍ୟାଦି
Su-ukāra (etc) (ଦେଖ)—Sīukāra etc. (See)

ସୁଉସିବା—ଦେ. କ୍ରି ( ଧ୍ୱନ୍ୟନୁକରଣ )—କୌଣସି ବ୍ୟକ୍ତିକୁ ମାରିବା
Su-usibā ପାଇଁ ଅତି ଜୋର୍‌ରେ ଦଉଡ଼ି ଆସିବା—
मार्ते दौडा To advance furiously towards a
झुकना person to strike a blow.

ସୁଏଜ୍—ଦେ· ବି (ନାମ—ୟୁରୋପ ଓ ଆସିଆର ମଧ୍ୟବର୍ତ୍ତୀ ଯୋଜକ,
Suej (ବର୍ତ୍ତମାନ ଯାହା କେନାଲରେ ପରିଣତ ହୋଇ ଭୂମଧ୍ୟସାଗର
সুয়েজ্ ଓ ଲୋହିତସାଗରକୁ ଯୋଗ କରୁଅଛି (ନଗର, ପ୍ରଣାଳୀ,
स्वेज केनाल )—Suez (isthmus, canal, gulf
and town.

ସୁଏଜ୍ କେନାଲ୍ ( ଖାଲ, ନାଳ )—ଦେ· ବି—ଭୂମଧ୍ୟସାଗର ଓ
Suej kenāl (khāla, nāla) ଲୋହିତସାଗରକୁ ଯୋଗ
সুয়েজ কেনাল କରିଥିବା ନାଳ—Suez canal. [ ଦ୍ର—ଏହି
स्वेज केनाल ନାଳ ଖୋଳା ହେବା ପୂର୍ବେ ସାହେବମାନେ
ଭାରତକୁ ଜଳପଥରେ ଆସିବା ପାଇଁ ଆଫ୍ରିକାର ଉତ୍ତମାଶା
ଅନ୍ତରୀପ (Cape of Good Hope) ବାଟେ ବୁଲି କରି
ଆସୁଥିଲେ । ଏହି ନାଳକୁ ଜଣେ ଫରାସୀ ଇଞ୍ଜିନିୟର୍ ବୁଦ୍ଧି-
ବଳରେ ଖୋଳାଇବାରୁ ଏହି ନାଳ ବାଟେ ସାହେବମାନେ
ଭୂମଧ୍ୟସାଗରରୁ ଲୋହିତସାଗର ଓ ଆରବ ଉପସାଗର
ବାଟେ ଭାରତକୁ ଆସୁଅଛନ୍ତି । ଏହି ନାଳ ବ ମାଇ-

ଇଂରାଜଙ୍କ ଅଧିକୃତ । ଏହାର ଉତ୍ତର ପ୍ରାନ୍ତରେ ପୋର୍ଟ ସଏଦ୍ ଓ ଦକ୍ଷିଣରେ ସୁଏଜ୍ ନଗର ନାମକ ଦୁଇଟି ବନ୍ଦର ଅବସ୍ଥିତ ।]

[ମିଶ୍ର ଦେଶର ପ୍ରାଚୀନ ନରପତି ଫାରାଓମାନଙ୍କ [Pharaohs] ସମୟରେ ଲୋହିତ ସାଗରଠାରୁ ନାଇଲ୍ [ନୀଳ] ନଦୀର ତ୍ରିକୋଣ ଭୂମି [ଡେଲ୍ଟା] ପର୍ଯ୍ୟନ୍ତ ଗୋଟିଏ କେନାଲ୍ ଖୋଲା ହୋଇଥିଲା । ଏହାର ପଶ୍ଚିମ ଆଜି ସୁଦ୍ଧା ବର୍ତ୍ତମାନ ରହିଅଛି । କିଛିକାଳ ପରେ ସେଥିରେ ବାଲି ଜମିଗଲା । ତତ୍ପରେ ପାରସୀକମାନେ ଆସି ବାଲି କଢ଼ାଇ କେନାଲର ପୁନଃପ୍ରତିଷ୍ଠା କରିଥିଲେ । ଏମାନଙ୍କ ପରେ ଖ୍ରୀଷ୍ଟ ଶତାବ୍ଦୀ ଆରମ୍ଭର ପ୍ରାୟ ଚାରିଶତ ବର୍ଷ ପୂର୍ବରୁ ମିଶରର ନରପତିମାନଙ୍କ ଦ୍ୱାରା କେନାଲ୍ ଖୋଲା ହେଲା । ତତ୍ପରେ ଆଉ ଥରେ ମିଶରର ମୁସଲମାନ୍ ବିଜେତାମାନେ ଏହି କେନାଲକୁ ଖୋଲାଇଥିଲେ । କିନ୍ତୁ ଇତିମଧ୍ୟରେ ଆଧୁନିକ ଧରଣର କେନାଲ୍ ଖୋଲା ହେଲା ଏବଂ ସେହି ପୁରାତନ କେନାଲଟି ଅସ୍ତେ ଅସ୍ତେ ଉଭେଇ ଗଲା ।

ପ୍ରାୟ ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଫର୍ଡିନାଣ୍ଡ୍ ଡି ଲେସେପ୍ସ (Ferdinand de Lesseps) ନାମକ ଜଣେ ଫରାସୀ ଇଞ୍ଜିନିଅର୍ ଅସୀମ ଉତ୍ସାହରେ ଗୋଟିଏ ନକ୍ସା ପ୍ରସ୍ତୁତ କଲେ । ସେ କିଛିକାଳ ଉତ୍ତାରେ ମିଶରର ରାଜା ଖେଦିଭ୍ [Khedive] ଙ୍କ ସାହାଯ୍ୟ ଲାଭ କରିବାରେ କୃତକାର୍ଯ୍ୟ ହୋଇଥିଲେ । ୧୮୫୬ ଖ୍ରୀଷ୍ଟାବ୍ଦରେ ସୁଏଜ୍ କେନାଲ୍ କୋମ୍ପାନୀ ସ୍ଥାପିତ ହୋଇଥିଲା । କେନାଲ ଖନନପାଇଁ ଯେତେ ଟଙ୍କା ଦରକାର ହୋଇଥିଲା ସେଥିରୁ ଅଧେ ଫ୍ରାନ୍ସ ଓ ଅଧେ ଖେଦିଭ୍ ସାହାଯ୍ୟ କରିଥିଲେ । ଖେଦିଭ୍ କେନାଲ୍ ଖୋଲା କାର୍ଯ୍ୟରେ ଖୁବ୍ ସାହାଯ୍ୟ କରିଥିଲେ । ସେ ଖୋଲା କାର୍ଯ୍ୟ ପାଇଁ କୁଲି ଯୋଗାଇ ଥିଲେ । ସମସ୍ତ କାର୍ଯ୍ୟ ସମ୍ପୂର୍ଣ୍ଣ ହେବାକୁ ଦୀର୍ଘ ଦଶବର୍ଷ କାଳ ଲାଗିଥିଲା । ସାମ୍ରାଜ୍ଞୀ ଇଉଜିନ [Eugenie] ଙ୍କ ଦ୍ୱାରା ୧୮୬୯ ମସିହା ନଭେମ୍ବର ମାସ ୧୭ ତାରିଖ ଦିନ କେନାଲ୍ ଖୋଲାଗଲା । ୧୮୭୫ ମସିହାରେ ଇଂଲଣ୍ଡର ପ୍ରଧାନ ମନ୍ତ୍ରୀ ଡିସ୍‌ରେଲି [Disraeli] ଇଂରେଜମାନଙ୍କ ପାଇଁ ସମସ୍ତ ୪୦୦,୦୦୦ ଅଂଶ ମଧ୍ୟରୁ ଖେଦିଭ୍‌ଙ୍କ ଭାଗ ୧୭୬,୬୦୨ ଗୋଟି ଅଂଶ ୪୦ ଲକ୍ଷ ପାଉଣ୍ଡ୍ ମୂଲ୍ୟ ଦେଇ କିଣି ନେଲେ । ଅଳ୍ପଦିନେ ଏହି ଅଂଶ ଗୁଡ଼ିକର ମୂଲ୍ୟ ୩ କୋଟି ୬୫ ଲକ୍ଷ ୨୪ ହଜାର ୩୫୦ ପାଉଣ୍ଡକୁ ବଢ଼ିଗଲା ।

୧୮୮୮ ମସିହାରେ ଅନ୍ତର୍ଜାତୀୟ ଚୁକ୍ତିପତ୍ର ଦସ୍ତଖତ ହୋଇଗଲା । ଏହା ଫଳରେ ସବୁ ଦେଶର ଯୁଦ୍ଧ ଜାହାଜ, ମାଲ ବୋଝାଇ ଜାହାଜ ଇତ୍ୟାଦି କି ଯୁଦ୍ଧ, କି ଶାନ୍ତି, ସମସ୍ତ ସମୟରେ ସୁଏଜ୍‌କେନାଲ୍ ମଧ୍ୟ ଦେଇ ଯାତାୟାତ କରିବା ପାଇଁ ଅନୁମତି ପାଇଲେ ।

ସୁଏଜ କେନାଲ୍ ପୋର୍ଟସୈଦ୍ ବନ୍ଦରଠାରୁ ସୁଏଜ୍ ବନ୍ଦର ପର୍ଯ୍ୟନ୍ତ ଏକ ଶତ ମାଇଲ ଲମ୍ବ । ପ୍ରଥମେ କେନାଲ୍‌ର ଓସାର ୭୨ ଫୁଟ ଥିଲା । ଏହା କ୍ରମେ ବୃଦ୍ଧି ପାଉଅଛି । ବର୍ତ୍ତମାନ କୌଣସିଠାରେ କେନାଲର ଓସାର ୧୩୫ ଫୁଟରୁ ଊଣା ନୁହେଁ । ସ୍ଥାନେ ସ୍ଥାନେ କେନାଲ୍‌ର ଓସାର ୧୯୬ ଫୁଟ୍ ଓ ବାଙ୍କ ମାନଙ୍କରେ ତାହାର ଓସାର ୨୫୦ ଫୁଟ୍ । ବର୍ତ୍ତମାନ କେନାଲ୍‌ର ଗଭୀରତା ପ୍ରାୟ ୪୦ ଫୁଟ୍ । ଯେଉଁ ଜାହାଜମାନ ୩୩ ଫୁଟରୁ କମ ଗଭୀର ଜଳରେ ଗତି କରିପାରେ, ସେହିଭଳି ଜାହାଜଗୁଡ଼ିକ କେବଳ କେନାଲ୍ ଭିତରେ ଯାତାୟାତ କରିବା ପାଇଁ ଅନୁମତି ପାଆନ୍ତି ।

ଏକା ସାଙ୍ଗରେ ଦୁଇଟି ଜାହାଜ କେନାଲ୍‌ରେ ଯାଇ ପାରେ ନାହିଁ । କେବଳ ଖୁବ୍ ଓସାରିଆ ଗ୍ରେଟ୍‌ବିଟର୍ ହ୍ରଦ ବ୍ୟତୀତ କେନାଲ୍‌ର ଅନ୍ୟ ଅଂଶମାନଙ୍କରେ ଗୋଟିଏ ଜାହାଜ କୂଳର ଦେହକୁ ଲାଗି ରହିଲେ ବିପରୀତ ଦିଗରୁ ଆସୁଥିବା ଜାହାଜ ଚାଲିଯିବାକୁ ସ୍ଥାନ ପାଏ । କେନାଲ କୂଳରେ ତେର ଗୋଟି ସିଗନାଲ୍ ଷ୍ଟେସନ୍ ଅଛି ।

ବଡ଼ ବଡ଼ ଜାହାଜମାନଙ୍କୁ କେନାଲ୍ ଭିତରେ ଘଣ୍ଟାରେ ପ୍ରାୟ ସାଢ଼େ ଛଅ ମାଇଲ୍‌ରୁ ବେଶୀ ବେଗରେ ଚଳାଇବାର ନିୟମ ନାହିଁ । କେବଳ ଗ୍ରେଟ୍ ବିଟର୍ ହ୍ରଦରେ ବେଶୀ ସ୍ଥାନ ଥିବାରୁ ଜାହାଜ ସେଠାରେ ଅଧିକ ବେଗରେ ଚାଲେ ।

ବଡ଼ ବଡ଼ ଜାହାଜଗୁଡ଼ିକୁ ଥରେ କେନାଲ୍‌ରେ ଯିବା ପାଇଁ ପ୍ରାୟ ୩ହଜାର ପାଉଣ୍ଡ୍ ମାସୁଲ ଦେବାକୁ ହୁଏ । ଜାହାଜକୁ କେନାଲ୍ ପାର ହେବା ନିମିତ୍ତ ବର୍ତ୍ତମାନ ପ୍ରାୟ ୧୨ ଘଣ୍ଟାରୁ ୧୫ ଘଣ୍ଟା ଲାଗେ । ଦିନରେ ପ୍ରାୟ ୧୬ଟି ଜାହାଜ ସୁଏଜ୍ କେନାଲ୍ ବାଟେ ଯାତାୟାତ କରେ । ସୁଏଜ୍ କେନାଲ୍ ବାଟେ ଯାତାୟାତ କରୁଥିବା ଜାହାଜ ଗୁଡ଼ିକ ଭିତରୁ ଶତକଡ଼ା ୫୫ଟି ଜାହାଜ ଇଂରେଜ-ମାନଙ୍କର ।

ଏ ସନ୍ଦର୍ଭ P & O Company ଙ୍କ ପ୍ରକାଶିତ Suez Canal ଇଂରାଜୀ ପ୍ରବନ୍ଧର ଅବଲମ୍ବନରେ ଶ୍ରୀ ବସନ୍ତକୁମାର ବେଉରାଙ୍କ ଦ୍ୱାରା ଲିଖିତ ଓ ନବଭାରତ (୫।୧)ରେ ପ୍ରକାଶିତ ।]

**ସୁଏଜ୍ ନଗର (ବନ୍ଦର)**—ଦେ. ବି—ସୁଏଜ୍ କେନାଲ୍‌ର ଦକ୍ଷିଣ ପ୍ରାନ୍ତରେ ସୁଏଜ୍ ପ୍ରଣାଳୀରେ ଅବସ୍ଥିତ ବନ୍ଦର—The port of Suez.
Suej nagara (bandara)
সুয়েজ্‌ বন্দর सुएज़नगर

**ସୁଏଜ୍ ପ୍ରଣାଳୀ**—ଦେ. ବି—ଲୋହିତ ସାଗରର ଉତ୍ତର ପଶ୍ଚିମ କୋଣରେ ଥିବା ପ୍ରଣାଳୀ, ଯାହାର ଉତ୍ତର [illegible] ଭୂମଧ୍ୟସାଗରକୁ ନାଳ ଖୋଲା ହୋଇଅଛି—The bay of Suez.
Suej praṇāli
সুয়েজ্‌ প্রণালী सुएज़ प्रणाली

ସୁଓର୍ (ଇତ୍ୟାଦି)—ଦେ ବ—ଶୁଅର. ଇତ୍ୟାଦି (ଦେଖ)
Suor (etc) Śuar etc. (See)

ସୁଂ (ସୁଁ)—ଦେ. ଅ (ଧ୍ୱନ୍ୟନୁକରଣ)—୧ । ଶରଦି ସମୟରେ ଶ୍ଳେଷ୍ମା-
Sum (suñ) ଯୁକ୍ତ ନାକରୁ ବାହାରିବା ଅନୁନାସିକ ଶବ୍ଦ—
(ସୁଁ ସୁଁ—ଅନ୍ୟରୂପ) 1. Nasal sound due to cold.
सूँ सुं ୨ । ଶବ୍ଦେଇ କରି ଧୀରେ ଧୀରେ କାନ୍ଦିବାର ଶବ୍ଦ—
2. Sound of sighing cry. ୩ । ଶରଦିରେ ନାକ
ଝାଡ଼ିବାର ଶବ୍ଦ; ସଁ ସଁ—3. The sound of
clearing the nose affected with cold.

ସୁଂ(ସୁଁ)ଗା(ଘା)—ଦେ. ବ ଓ ବି—ଶୁଙ୍ଗା (ଦେଖ)
Sum(suñ)gā(ghā) Śungā. (See)

ସୁଂ[ସୁଁ]ଗା[ଗେ,ଘା,ଘେ]ଇବା—ଦେ. କ୍ରି—ଶୁଙ୍ଗାଇବା [ଦେଖ]
Sum[suñ]gā[ge,ghā,ghe]ibā Śungāibā [See]

ସୁଂ[ସୁଁ]ଗା[ଘା] ସୁଂ[ସୁଁ]ଗି[ଘି]—ଦେ. ବ—ଶୁଙ୍ଗାଶୁଙ୍ଗି [ଦେଖ]
Sum[suñ]gā[ghā] sum[suñ]gi[ghi] Śungāsungi,
[See]

ସୁଂ[ସୁଁ]ଗି[ଘି]ବା—ଦେ. କ୍ରି—ଶୁଙ୍ଗିବା [ଦେଖ]
Sum[suñ]gi[ghi]bā Śungibā. [see]

ସୁଁ—ଦେ. ଅ [ପଞ୍ଚମୀ ବିଭକ୍ତି ଚିହ୍ନ]—୧ । ରୁ; ଠାରୁ—1. From;
Suñ since. [ଦ୍ର—କଣ୍ଠୋପରିକ ! ଏତେ ଶୁଣ ବୋଲି ଜାଣି
हइते, थेके से ଥିଲି କି । କେଉଁସୁଁ ନ କହିଲ; ମୂଳ ପରୁ କରି
ଚେତ ଧରି ଥିଲି କଣ୍ଠୁଁ ପଡେଇଲା—ଉପ ।] ୨ । ସୁଂ
( ଦେଖ )—2. Sum ( See )

ସୁଁଆଁ (ଇତ୍ୟାଦି)—ଦେ. ବ—ସୁଅଁ ଇତ୍ୟାଦି (ଦେଖ)
Suñāñ (etc) Suāñ etc (See)

ସୁଁକାର—ଦେ. ବ—ନାକର ସୁଁ ସୁଁ ଶବ୍ଦ—
Suñkāra Nasal hissing sound.
सूँकार सुंकार

ସୁଁତ—ପ୍ରାଦେ. ( ଲବଥ ) ବ ( ହିନ୍ଦ. ବଂ ସୂତା )—ସୂତା—
Suñta Thread.

ସୁଁଠା(ଥା) (ଇତ୍ୟାଦି)—ଗ୍ରା ବ—ସୁଣ୍ଠା ଇତ୍ୟାଦି ( ଦେଖ )
Suñtā(thā) (etc) Sunthā etc ( See )

ସୁଁଠା(ଥା)ଣି—ଦେ ବ—ସୁଣ୍ଠାଣି ( ଦେଖ )
Suñtā(thā)ṇi Sunthāṇi ( See )

ସୁଁଥାଣ(ଣି)—ଦେ. ବ—ସୁଣ୍ଠାଣ ( ଦେଖ )
Suñthāṇa(ṇi) Sunthāṇa ( See )

ସୁଁସୁଁଆଁ (ୟାଁ)—ଦେ. ବି, ସୁଂ—ଯେଉଁ ବ୍ୟକ୍ତି ସୁଁ ସୁଁ ଶବ୍ଦ କରେ—
Suñsuñāñ(yāñ) Making small nasal sounds.
सूँसूँ ये सुं सुं करने वाला (ସୁଁସୁଁଇ—ସ୍ତ୍ରୀ)

ସୁଁ ସୁଁ କାନ୍ଦିବା ଦେ. କ୍ରି—ଉଚ୍ଚ ପାଟି ନ କରି, ଘୁଞ୍ଚି ଘୁଞ୍ଚି, ସୁଁ ସୁଁ
Suñ suñ kāndibā ଶବ୍ଦ କରି କାନ୍ଦିବା—To moan
सूँ पिये सूँ पिये काँदा with suppressed hissings.
सुसुक सुसुक रोना

ସୁଁ ସୁଁ ହେବା—ଦେ. କ୍ରି—୧ । ଶର୍ଦ୍ଦି ଯୋଗୁଁ ଅନୁନାସିକ ନିଶ୍ୱାସ-ଶବ୍ଦ
Suñ suñ hebā କରିବା—1. To make a nasal
सूँ सूँ करना sound of breathing. ୨ । ସବ୍ଦେଇ କରି
सुं सुं करना କାନ୍ଦିବା—2. To moan with sighs and
suppressed hissings.

ସୁକ୍[କୁ]ତ[ତା]ଲା[ଳ]—ଦେ. ବ—ଶୁକ୍ତଳା ( ଦେଖ )
Suk-[ku]ta[tā]lā[la] Śuk-talā ( See )

ସୁକ୍ତାନି—ଦେ. ବ ( ବଂ ସୁକ୍ତ )—ଶୁକ୍ତାନି ( ଦେଖ )
Suk-tāni Śuktāni ( See )

ସୁକ୍ପାଲ—ପ୍ରାଦେ. (ବମ୍ବ ) ବ—ପାଲିକି—
Suk-pāl Palanquin.

ସୁକ୍[କୁ]ସୁକ୍[କୁ] ( ଇତ୍ୟାଦି )—ଦେ. ବଣ—ଶୁକ୍ ଶୁକ୍ ଇତ୍ୟାଦି
Suk-[ku]suk-[ku] ( etc ) ( ଦେଖ )—Śuk śuk etc
( See )

ସୁକ୍[କୁ]ସୁକା—ଦେ. ବଣ ସୁ—ଶୁକ୍ଶୁକା (ଦେଖ)—Śuk-śukā
Suk-[ku]sukā (ସୁକ୍[କୁ]ସୁକିଆ—ଅନ୍ୟରୂପ) ( See )
(ସୁକ୍[କୁ]ସୁକୀ, ସୁକ୍[କୁ]ସୁକେଇ—ସ୍ତ୍ରୀ)

ସୁକ—ଦେ. ବ—ସୁକୁମାରର ଡାକ ନାମ—Nickname for Suku-
Suka māra. ଗ୍ରା. ବ ( ସଂ. ସୁଖ; ପ୍ରା. ସୁକ୍ଖ )—୧ । ଶୁକ
सूकों ବ. ( ଦେଖ )—1. Śuka ( See ) ୨ । ( ସଂ.
सुक्ख ସୁଖ ) ସୁଖ—2. Happiness. ୩ । ଆନନ୍ଦ—
3. Pleasure. ୪ । ସ୍ୱାସ୍ଥ୍ୟ—4. Health. ଗ୍ରା.
सूकनो सूखा ବଣ ( ସଂ. ଶୁଷ୍କ; ପ୍ରା. ସୁକ୍ଖ )—ଶୁଖିଲା; ଶୁଷ୍କ—
Dry.

ସୁକଟ ( ଇତ୍ୟାଦି )—ଦେ. ବ—ସୁକୁଟ ଇତ୍ୟାଦି ( ଦେଖ )—
Sukaṭa ( etc ) Sukuṭa etc ( See ) [ଦ୍ର—ଯାହାର
ଥିବ ଚେତନ ଅଙ୍ଗ । ଦେଖିବ ତୁମ୍ଭେ ତାହାର ସୁକଟ—
କଳସୁଣି. ଗୀତ ।]

ସୁକଟାକ୍ଷା—ସଂ. ବଣ(ବହୁବ୍ରୀହି; ସୁ+କଟାକ୍ଷ+ଅ)—ସୁନ୍ଦରୀ; ସୁନୟନା
Sukaṭākshā —( a woman ) Having charming
and ogling eyes. [ ଦ୍ର—ଜଗତ ରୂ ଦେଖ
ଜଣା । ଚନ୍ଦ୍ରାକରେ କ ରୂପରେ ଅଛ ସୁକଟାକ୍ଷା—ଭଞ୍ଜ,
ବୈଦେହୀଶବିଳାସ । ]

ସୁକଠିନ—ସଂ. ବଣ—୧ । ଅତି କଠିନ; ଅତି ଦୃଢ଼—
Sukaṭhina 1. Very hard. ୨ । ଦୁଷ୍କର—
2. Very difficult.

ସୁକଣ୍ଟକା—ସଂ. ବ—ଘୃତକୁମାରୀ ( ଘିକୁଆଁରି )—
Sukaṇṭakā The Indian aloe; Aloe Indica.

ସୁକଣ୍ଠ—ସଂ. ବ—ମଧୁର କଣ୍ଠ ସ୍ୱର—Sweet tone. ସଂ.
Sukaṇṭha ବଣ. ପୁଂ ( ବହୁବ୍ରୀହି )—ମଧୁର ବା ସୁନ୍ଦର
[ସୁକଣ୍ଠୀ—ସ୍ତ୍ରୀ. ବଣ] କଣ୍ଠ ଯୁକ୍ତବିଶିଷ୍ଟ—Having a sweet
tone; sweet-toned; melodious.

ସୁକଣ୍ଠୀ—ବେ. ବଣ. ସ୍ତ୍ରୀ ( ସଂ. ସୁକଣ୍ଠା )—୧ ମଧୁର ସ୍ୱରବିଶିଷ୍ଟା
Sukanthi (ସ୍ତ୍ରୀ)—1. ( a lady ) Having a sweet tone. ୨ । ସୁନ୍ଦରକଣ୍ଠଯୁକ୍ତା—
ସୁକଣ୍ଠି ସୁକଂଠୀ 2. (a woman) Having a beautiful neck.

ସୁକଣ୍ଡୁ—ସଂ. ବି—କଣ୍ଡୁ ରୋଗ; କାଛୁ [ ଶବ୍ଦରତ୍ନାବଳୀ ]—
Sukandu Itches.

ସୁକନ୍ଦ—ସଂ. ବି—କଶେରୁ [ ରାଜନିର୍ଘଣ୍ଟ ]; ମୁଥା—
Sukanda Grass-root; Cyprus Rotunda.

ସୁକନ୍ଦକ—ସଂ. ବି—୧ । ପଲାଣ୍ଡୁ; ପିଆଜ—1. Onion. ୨ । ବାରାହୀ
Sukandaka କନ୍ଦ—2. A medicinal root bulb; Disocorea. ୩ । ଧରଣୀ କନ୍ଦ—
3. A medicinal root bulb.

ସୁକନ୍ଦୀ—ସଂ. ବି—ଶୂରଣ; ଓଲୁଅ ( ରାଜନିର୍ଘଣ୍ଟ )—
Sukandi Wild taro; wild arum.

ସୁକନ୍ୟକ—ସଂ. ବଣ. ପୁଂ ( ବହୁବ୍ରୀହି; ସୁ+କନ୍ୟକା+ଅ )—
Sukanyaka ଯାହାର କନ୍ୟା ସୁନ୍ଦରୀ—Having a beauti-
[ସୁକନ୍ୟକା—ସ୍ତ୍ରୀ] ful daughter.

ସୁକନ୍ୟା—ସଂ. ବି ( କର୍ମଧା )—୧। ସୁନ୍ଦରୀ କନ୍ୟା—1. A beauti-
Sukanyā ful girl. ୨ । (ନାମ) ଶର୍ଯ୍ୟାତି ରାଜାଙ୍କ କନ୍ୟା; ଚ୍ୟବନ ଋଷିଙ୍କ ସ୍ତ୍ରୀ—2. Name of the wife of Chyabana sage. [ ଉ—ସୁକନ୍ୟା ଚ୍ୟବନ ସମୀପେ । ଶଚି ମନ ଅନୁରୂପେ—ଜଗନ୍ନାଥ. ଭାଗବତ ।] [ବୃ—ଶର୍ଯ୍ୟାତି ମୃଗୟା କମନ୍ତେ ଥରେ ସପରିବାର ଅରଣ୍ୟକୁ ଯାଇଥିଲେ । ସୁକନ୍ୟା ମନ ଆନନ୍ଦରେ ବନରେ ବୁଲୁ ବୁଲୁ ଗୋଟିଏ ବୁଦା ମଧ୍ୟରେ ଜୁଳୁଜୁଳୁ ଦିଶୁଥିବା ଦୁଇଟି ଉଜ୍ଜ୍ୱଳ ପଦାର୍ଥ ଲକ୍ଷ କରି ବାଳସୁଲଭ କୌତୁକ ବଶତଃ ସେ ଦୁଇଟି ବସ୍ତୁକୁ କଣ୍ଟାଦ୍ୱାରା ଫୋଡ଼ି ଦେଲେ । ଦେଖାଗଲା ଯେ, ଏ ଦୁଇଟି ଉଜ୍ଜ୍ୱଳ ବସ୍ତୁ ତପସ୍ୟାମଗ୍ନ ଚ୍ୟବନ ଋଷିଙ୍କର ଦୁଇଟି ଚକ୍ଷୁ । ଚ୍ୟବନ ମୁନି ନିଜର ନୟନ ନାଶରେ କ୍ରୁଦ୍ଧ ହୋଇ ଅଭିଶାପଦ୍ୱାରା ରାଜାଙ୍କ ସୈନ୍ୟଗଣର ମଳ ମୂତ୍ର ତ୍ୟାଗ ବନ୍ଦ କରି ଦେଲେ । ରାଜା ଅନନ୍ୟୋପାୟ ହୋଇ ଋଷିଙ୍କ ହସ୍ତରେ ସ୍ୱ କନ୍ୟା ସୁକନ୍ୟାଙ୍କୁ ଅର୍ପଣ କରି ଉକ୍ତ ଶାପରୁ ନିଷ୍କୃତି ପାଇଲେ । ଚ୍ୟବନ ଅତ୍ୟନ୍ତ କୋପନ-ପ୍ରକୃତି ଥିଲେହେଁ ସୁକନ୍ୟା ସ୍ୱୀୟ ପାତିବ୍ରତ୍ୟ ଓ ସେବାଦ୍ୱାରା ସ୍ୱାମୀଙ୍କୁ ପରମ ପ୍ରୀତ କରାଇଲେ । ]

ସୁକନ୍ୟାକ—ସଂ. ବଣ. ପୁଂ ( ବହୁବ୍ରୀହି )—ସୁକନ୍ୟକ ( ଦେଖ )
Sukanyāka Sukanyaka ( See )
( ସୁକନ୍ୟାକା—ସ୍ତ୍ରୀ )

ସୁକର—ସଂ. ବଣ. ପୁଂ ( ସୁ+କୃ ଧାତୁ+କର୍ମ. ଅ )—୧ । ସୁସାଧ୍ୟ;
Sukara ସହଜସାଧ୍ୟ; ଅଳ୍ପାୟାସସାଧ୍ୟ—1. Easy of accom-
ସୁକର ସୁକର plishment. ୨ । ସୁଖକର—2. Pleasant.
[ସୁନ୍ଦର—ଅପଭ୍ରଂଶ] ବେ. ବଣ—ସୁନ୍ଦର—Beautiful. [ଉ—
କାହିଁଲେ ସୁକର କର୍ଣ୍ଣଙ୍କ ପରଶାର ସେ—ଭଞ୍ଜ. ବୈଦେ-
ହୀଶବିଳାସ ।] ଗ୍ରା. ବି ( ସଂ. ଶୂକ )—ଶୂକର ( ଦେଖ )
ଶୁକର ସୁକର Sūkara ( See )

ସୁକରଜା—ସଂ. ବଣ ( ବହୁବ୍ରୀହି; ସୁ+କରଜ+ଅ )—ସୁନଖୀ;
Sukarajā ସୁନ୍ଦର ନଖବିଶିଷ୍ଟା—[ a lady ] Having beautiful nails. [ ଉ—ସୁକରଜା ମୋହ ପାରେ ଶୁକ—ଭଞ୍ଜ. ପ୍ରେମସୁଧାନିଧି । ]

ସୁକରା—ସଂ. ବି. ସ୍ତ୍ରୀ ( ସୁକର+ଅ )—ସୁଶୀଳା ଗୋ; ଶାନ୍ତ ଗାଈ
Sukarā (ଅମର)—A meek cow.

ସୁକର୍ଣ୍ଣକ—ସଂ. ବଣ. ପୁଂ (ବହୁବ୍ରୀହି)—ସୁନ୍ଦର କର୍ଣ୍ଣଯୁକ୍ତ—
Sukarnnaka Having butiful ears.
(ସୁକର୍ଣ୍ଣିକା—ସ୍ତ୍ରୀ) ସଂ. ବି—ହସ୍ତିକନ୍ଦ (ଦେଖ)
Hastikanda (See)

ସୁକର୍ଣ୍ଣିକା—ସଂ. ବି—ମୂଷିକକର୍ଣ୍ଣୀ (ଶବ୍ଦରତ୍ନାବଳୀ); ମୂଷାକାନ;ବନ
Sukarnnikā ଶାକ ବିଶେଷ—Aculypha Indica.

ସୁକର୍ମ[ର୍ମ୍ମ]—ସଂ. ବି—୧ । ସୁନ୍ଦର କାର୍ଯ୍ୟ; ଉତ୍ତମ କାର୍ଯ୍ୟ—
Sukarma[rmma] 1. Good work. ୨ । ସତ୍କ୍ରିୟା; ସତ୍କାର୍ଯ୍ୟ—2. Benevolent act. ସଂ. ବଣ—ସତ୍କ୍ରିୟ (ବ୍ୟକ୍ତି)—( A man ) Performing good acts.

ସୁକର୍ମ[ର୍ମ୍ମ] ସେବା—ସଂ. ବି—ଉତ୍ତମ କର୍ମ ସାଧନ; ଉତ୍ତମ ବା ଭଲ
Sukarma[rmma] sebā କର୍ମ ସାଧିବାରେ ନିଜର ନିୟୋଜନ—Performance of good acts. (ଉ—ନ ଦେଇ ଅବୁଝେ ମନ ଗୋ । କର୍ମମୟ ଭବେ ସୁକର୍ମ ସେବାରେ ରତ ଥିବା ସଲକ୍ଷଣ ଗୋ—ବାଳକୃଷ୍ଣ. ଫୁଲ ଚନ୍ଦନବେଣୀ ।)

ସୁକର୍ମା(ର୍ମ୍ମା)—ସଂ. ବଣ. ପୁଂ (ବହୁବ୍ରୀହି; ସୁ+କର୍ମନ୍; ୧ମା. ୧ବ)—
Sukarmā(rmmā) ୧ । ଶୋଭନ କର୍ମଶୀଳ; ସତ୍କ୍ରିୟ (ହେମଚନ୍ଦ୍ର)—1. Performing good acts. ୨ । କର୍ମକ୍ଷମ; କାର୍ଯ୍ୟକୁଶଳ —2. Able; skilful. ସ. ବି—୧। (ଜ୍ୟୋତିଷ) ବିଷ୍କମ୍ଭାଦି ସପ୍ତବିଂଶତି ଯୋଗାନ୍ତର୍ଗତ ସପ୍ତମ ଯୋଗ—1. ( Astrology ) One of the 27 astrological conjunctions. [ ଉ—ଏଥିରେ ଜାତ ହେବା ବ୍ୟକ୍ତି ପରୋପକାରୀ, କଳାକୁଶଳ, କୀର୍ତ୍ତିଯୁକ୍ତ, ଯଶସ୍ୱୀ ଓ ସୁକର୍ମି ହୁଏ । କୋଷ୍ଠୀ ପ୍ରଦୀପ ।] ୨ । ବିଶ୍ୱକର୍ମା ( ମେଦିନୀ )—2. The heavenly architect.

ସୁକଳ—ସଂ. ବି. ପୁଂ (ସୁ=ଅତ୍ୟନ୍ତ+କଲ୍ ଧାତୁ=ଶବ୍ଦ କରିବା+
Sukala କର୍ତ୍ତୃ. ଅ)—ଦାତା ଓ ଭୋକ୍ତା; ଦାନ ଓ ଭୋଗରେ (ସୁକଳା—ସ୍ତ୍ରୀ) ସମର୍ଥ ବ୍ୟକ୍ତି—A person who is a good bestower and enjoyer of things. ସଂ. ବଣ—(ବହୁବ୍ରୀହି; ସୁ=ଉତ୍ତମ ଅଛି କଳ=ଧ୍ୱନି ଯାହାର)—୧ । ମଧୁର ଧ୍ୱନିକାରୀ—1. Making a sweet sound. ୨। ଅବିକଳ—2. Exact. ୩। ଦାନଶୀଳ—3. Generous; charitable.

ସୁକଲ୍ୟ—ଦେ. ବିଣ (ସଂ. ସୁକଲ)—ସୁକଲ (ଦେଖ)
Sukalya Sukāla. (See)
ଦାତାଓ ଭୋଗୀ ( ଉ—ସୁକଲ୍ୟ ଅମାଙ୍ଗ ମାନବ, ଭବ ମଇବ
दाता और भोगी ଶୁଦ୍ଧବୋଧ । ଜଗନ୍ନାଥ. ଭାଗବତ । )

ସୁକା(କି)—ଦେ. ବି —୧ । ସିକି—1. Four anna bit. ୨ ।
Sukā(ki) ଶୁକଦେବ ଓ ସୁକୁମାରର ଡାକ ନାମ—2. Names
शुका सुका for calling Śukadeba and
(ସୁକାଇ, ସୁକଅ, ସୁକୁ, ସୁକୁଅ, ସୁକେଇ-ଅପଭ୍ରଂଶ) Sukumāra.
ଦେ. ବିଣ—ଶୁକା (ଦେଖ)—Śukā. (See)

ସୁକାଣ୍ଡ—ସଂ. ବି —୧ । (କର୍ମଧା) ସୁନ୍ଦର କାଣ୍ଡ —1. A beautiful
Sukāṇḍa trunk. ୨ । (ବହୁବ୍ରୀହି) କାରବେଲ୍ଲ (ଶବ୍ଦକଳ୍ପଦ୍ରୁମ)
ଲତା—2. Hairy Memordica creeper and
its bitter fruit. ସଂ. ବିଣ ( ବହୁବ୍ରୀହି)—
ସୁନ୍ଦର କାଣ୍ଡଯୁକ୍ତ (ବୃକ୍ଷାଦି)—Having a beautiful
trunk or stalk.

ସୁକାଣ୍ଡିକା—ସଂ. ବି—କାଣ୍ଡୀର ଲତା (ଶବ୍ଦକଳ୍ପଦ୍ରୁମ)—
Sukāṇḍikā A sort of creeper.

ସୁକାଣ୍ଡୀ - ସଂ. ବିଣ (ସୁ+କାଣ୍ଡ+ଇନ୍; ୧ମା. ୧ବ)—୧ । ସୁନ୍ଦର
Sukāṇḍi କାଣ୍ଡଯୁକ୍ତ—1. Having a good trunk. ୨ ।
ଭ୍ରମର (ଶବ୍ଦକଳ୍ପଦ୍ରୁମ)—2. The black bee.

ସୁକାନ(ନି)—ବୈଦେ. ବି (ଫା. ସୁକାନ୍ = ନୌକାର କଣ୍ଢି)—
Sukān(ni) ନୌକାର ପଛ ମଙ୍ଗରେ ଥିବା କଣ୍ଢାଳ ଦଣ୍ଡ ବା
हाल ଯନ୍ତ୍ର—The helm of a boat. [ ଉ—ନାବାର
सुक्कान, पतवार ସୁକାନରେ ଖାଲି ହାତ ପକାଅ, ସଜଣ
ନାବାକୁ ଧାଇଁ ଛି । ଫକୀରମୋହନ. ଗଳ୍ପସ୍ୱଳ୍ପ ।]

ସୁକାନ(ନି) ଧରିବା—ଦେ. କି—ଡଙ୍ଗା ଅବର ମଙ୍ଗ ଧରିବା—
Sukān(ni) dharibā To steer the helm of a
हाल धरना सुकान पकड़ना boat.

ସୁକାନ—ଦେ. ବି—ଚିଲିକାରେ ଯେଉଁ ଡଙ୍ଗାରେ ଲୋକମାନେ
Sukāna ଯାଆନ୍ତି ଆସନ୍ତି—A kind of boat used in
स्वान सुकान carrying passengers across the
Chilka lake.

ସୁକାନି—ବୈଦେ. ବି ( ଫା. ସୁକାନ = କଣ୍ଢଧାର )—ନୌକାର
Sukāni କଣ୍ଢଧାର; ମଙ୍ଗଧର—The helmsman. ( ଉ—
माँझि, काण्डारी ......ଲୋକମାନେ ଅନ୍ଧ ସୁକାନି ଅଥବା ଅସଂଶ
सुक्कानि, पतवारिया ଜାଗାରେ ବଡ଼ା ହୋଇଗଲେ । ଫକୀର-
ମୋହନ. ଗଳ୍ପସ୍ୱଳ୍ପ ।) ଗ୍ରାଦେ (ଉତ୍ତର ବାଲେଶ୍ୱର) ବି —
ସୁନିସୁନିଆ—Marsibā Quadrifolia. (pot-herb)

ସୁକାନ୍ତ—ସଂ. ବି. ପୁଂ—ସ୍ନେହଶୀଳ ସ୍ୱାମୀ—Loving husband.
Sukānta ଦେଶ. ବି. ପୁଂ—ଲୋକଙ୍କର ନାମ—
सुकान्त सुकान्त A name given to males.
( ସୁକାନ୍ତା—ସ୍ତ୍ରୀ )

ସୁକାନ୍ତି—ସଂ. ବି—୧ । ସୁନ୍ଦର କାନ୍ତି—1. Beautiful lus-
Sukānti tre. ୨ । (ନାମ) ମୁନି ବିଶେଷ—2. Name
of a sage. ( ଉ—ଏକାନ୍ତେ ସୁକାନ୍ତି ଚନ୍ଦ୍ରକାନ୍ତ-ଶାର-
ଣେ ଲବଦ୍ଧାର । ରାଧାନାଥ. ଚନ୍ଦ୍ରଭାଗା ।) [ ଦ୍ର—ସୁକାନ୍ତି
ଋଷିଙ୍କ କଥା ପ୍ରାଚୀନପୁରାଣରେ ମହାକବି ରାଧାନାଥ ଯୋଡ଼ିଥିବା
ପୌରାଣିକ କିଂବଦନ୍ତୀ ଅଛି ।] ୩ । (ନାମ) ବିଦ୍ୟୁଜ୍ଜିହ୍ୱ
ରାକ୍ଷସର ଭଉଣୀ—3. Sister of the Rākshasa
Biddyujjihwa, who assumed the form
of Sitā by magic. (ଉ—ବାସ୍ତା ଦେଇ କଲେ ଗତ
ସୁକାନ୍ତିର ବେଶ ଲୋକ ମନାଇ ଛାମୁରେ ଶରଥେ ଦାଣ୍ଡ ।
ଇଙ୍କ. ବୈଦେହୀଶବିଳାସ ।) [ଦ୍ର—ଏହି ରାକ୍ଷସୀ ରାବଣର
ପ୍ରବୋଚନାରେ ମାୟାସୀତା ରୂପଧାରଣ କରିଥିଲା ।]
ସଂ. ବିଣ. ପୁଂ ଓ ସ୍ତ୍ରୀ. ( ବହୁବ୍ରୀହି)—ସୁଶ୍ରୀ; ସୁନ୍ଦର—
Beautiful (male and female). ( ଉ—ଦେ
ଭଲ ଜାଣିଲ କର କାହିଁ ଲକ୍ଷ୍ୟ ସୁକାନ୍ତିକି ଦେଖ ଭୁଲଇ ।
ଇଙ୍କ. କୋଟିବ୍ରହ୍ମାଣ୍ଡସୁନ୍ଦରୀ ।)

ସୁକାମା—ସଂ. ବିଣ. ସ୍ତ୍ରୀ—ଶୋଭନ କାମଯୁକ୍ତା—Having a good
Sukāmā desire. ସଂ. ବି—ତ୍ରାୟମାଣା ( ଶବ୍ଦକଳ୍ପଦ୍ରୁମ );
बनाड़ मूग, बनभाफुलिया ଦ୍ରୁମାଲୟକୋଲ୍ୟ ବନଦଲଣ ଗୁଲ୍—
सुकामा A plant; Thalictrum Faliolosum.

ସୁକାର—ଦେ. ବି - ସୁ ସୁ ଶବ୍ଦ—Hissing sound. ( ଉ—ଗର୍ଜନ
Sukāra ବ୍ୟାଙ୍ଗେ କଲ ସୁକାର ଦେଇ । ବୃନ୍ଦାବତୀ. ମହାଭାରତ
सौं सौं ବନ । ) ଗ୍ରା. ବି (ସ୍ୱୀକାର)—ସ୍ୱୀକାର (ଦେଖ)—
सुकार Swīkāra. (See)

ସୁକାଳ—ସଂ. ବି (କର୍ମଧା)—୧ । ସୁସମୟ—1. Good time. ୨ ।
Sukāla ଦେଶରେ ସୁଭିକ୍ଷ ଅବସ୍ଥା—2. Time of plenty
in the country.

ସୁକାଷ୍ଠକ—ସଂ. ବି—୧ । ଉତ୍କୃଷ୍ଟ ବା ସୁନ୍ଦର କାଷ୍ଠ—1. Excel-
Sukāshṭhaka lent or nice wood. ୨ । ଦେବଦାରୁ
(ଶବ୍ଦକଳ୍ପଦ୍ରୁମ); ଦେବଦାରୁ—2. Pine wood.

ସୁକାଷ୍ଠା—ସଂ. ବି—୧ । କଟୁକୀ; କଟୁକ (ଶେଷେଲୁ କହି)—1. Black
Sukāshṭhā hellebore. ୨ । କାଷ୍ଠ କଦଳୀ (ଶବ୍ଦ
କଳ୍ପଦ୍ରୁମ)—2. A sort of wild hard
plantain.

ସୁକି—ଦେ. ବି—୧ । ସିକିଏ; ଚାରି ଅଣା—1. Four anna bit.
Suki ୨ । ଟଙ୍କାର ଏକ ଚତୁର୍ଥାଂଶ—2. ¼ of a rupee. ୩ ।
सिकि ତୋଳାର ଏକ ଚତୁର୍ଥାଂଶ—3. ¼ of a tola in
चौअन्नि, सुका weight.

ସୁକିନ୍ଦା—ଦେ. ବି (ନାମ)—କଟକ ଜିଲ୍ଲାର ଯାଜପୁର ସବଡିଭିଜନ
Sukindā ଅନ୍ତର୍ଗତ ଗୋଟିଏ ଜମିଦାରୀ—The name
of an estate in the Cuttack district.
[ ଦ୍ର—ଏହିସବୁ ଜମିଦାରୀର ମଧ୍ୟରେ ମଧ୍ୟଯୁଗରେ ରାଜାମାନେ
ସେତେବେଳେ ଭୂମିଭୂୟାଙ୍କୁ ଜଣେଇଥିଲେ ବର୍ଣ୍ଣନା ଯାଇ ଅଛି
ଥିଲେ । ସେ ଏଠାରେ ବହୁ ଏହି ଜମିର ଜମିଦାରିକି

ଅସଭ୍ୟ ଜାତିଙ୍କ ପ୍ରଧାନ କୃଷ୍ଣଚନ୍ଦ୍ର ଧୀରଙ୍କ କନ୍ୟାଙ୍କୁ ବିବାହ କରି ସୁକିନ୍ଦାର ରାଜା ହେଲେ । ତାଙ୍କ ସମୟରୁ ଅଦ୍ୟ ପର୍ଯ୍ୟନ୍ତ ସୁକିନ୍ଦାରେ ସର୍ବ ମୋଟ ୪୪ ଜଣ ରାଜା ହେଲେଣି ।

ଲେଖକ—ଶ୍ରୀ ଚନ୍ଦ୍ରଶେଖର ଦାସ ।]

ସୁକୁ—ଦେ· ବି (ନାମ)—୧ । (ପୁଂ) ସୁକୁମାରର ଡାକ ନାମ—
Suku 1. (Masculine) Name for calling Sukumāra. ୨ । (ସ୍ତ୍ରୀ) ସୁକୁମାରୀର ଡାକ ନାମ—2. (Feminine) Name for calling Sukumārī.

ସୁକୁଟ—ଦେ. ବି (ବ୍ୟଙ୍ଗାର୍ଥକ)—୧ । ତାଣ୍ଡବ; କଳହକଥା; ଅନର୍ଥ;
Sukuṭa ଦ୍ୱନ୍ଦ୍ୱ—1. Any quarrel. [ ଉ—ସେ ଗାଁ|ଅଛୁ ମଜା ଅସି ସୁକୁଟ ଲଗାଇଛି ।] ୨ । ଅଭିନୟ; ନାଟ; ନୃତ୍ୟ— ঝগড়া 2. Dancing. [ଉ—ତା ଘରେ ସୁକୁଟ ଲଗିଛି ।] লাঞ্ছনা ୩ । ଲାଞ୍ଛନା; ହଟହଟା—3. Being in trouble; दिक्कत harassment. [ ଯଥା—ତୁ ମୋ ସୁକୁଟ ଦେଖୁଛୁ ।]

ସୁକୁଟ ଦେଖିବା—ଦେ· କି—ପରର ଦୁଃଖ ବା ଲାଞ୍ଛନାଭୋଗକୁ
Sukuṭa dekhibā ଅନନ୍ଦ ସହିତ ଦେଖିବା—To look মজাদেখা complacently on another's troubles; to दिक्कत देखना gloat over another's misery.

ସୁକୁଟ ଲଗା(ଗେ)ଇବା—ଦେ· କି—ଅନର୍ଥ ବା କଳି ଘଟାଇବା—
Sukuṭa lagā(ge)ibā To foment quarrel or মজা লাগান, ঝগড়া বাঁধান झगड़ा लगाना trouble. (ସୁକୁଟ ଲଗାଇ ଦେବା—ଅନ୍ୟରୂପ)

ସୁକୁଟା [ଇତ୍ୟାଦି]—ଦେ. ବିଣ—ଶୁକୁଟା ଇତ୍ୟାଦି [ଦେଖ]
Sukuṭā (etc) Śukuṭā etc. (See)

ସୁକୁଟି (ଇତ୍ୟାଦି)—ଦେ. ବିଣ ଓ ବି—୧ । ଶୁକୁଟି ଇତ୍ୟାଦି (ଦେଖ)-
Sukuṭi (etc) 1. Śukuṭi etc. (See) ୨ । ଝିଅଙ୍କୁ ଦିଆ ଯିବା ଘରୋଇ ନାମ—2. Nickname of girls.

ସୁକୁତାନି—ଦେ. ବି (ଫ. ସୁଖ୍ତ)—ଶୁକ୍ତାନି (ଦେଖ)
Sukutāni Śuktāni. (See)

ସୁକୁତୁଣୀ ପୂଜା—ଦେ· ବି—ଶୁବଚନୀ (ଦେଖ)—Śubachanī.
Sukutuṇī pūjā (See) [ଉ—ଝିନାଥମେଳା, ସୁକୁତୁଣୀ ପୂଜା, [ସୁକୁତୁଣୀ ପୂଜା—ଅନ୍ୟରୂପ] ଗ୍ରାମଦେବତା ମାନସା—ଦୁଇଜଣ ଯାକ ଢେର୍ ଢେର୍ ଧର୍ମକାର୍ଯ୍ୟ କଲେ । ଫକୀରମୋହନ. ଗଳ୍ପସ୍ୱଳ୍ପ ।]

ସୁକୁନ୍ଦକ—ସଂ. ବି—ପଳାଣ୍ଡୁ [ଶବ୍ଦ ରତ୍ନାବଳୀ]—
Sukundaka Onion.

ସୁକୁନ୍ଦନ—ସଂ. ବି—ବର୍ବର ଚନ୍ଦନ [ଭ୍ରାଜ କର୍ଣ୍ଣ]—
Sukundana . A kind of sandal wood.

ସୁକୁ(ଖୁ)ମ—ଗ୍ରା. ବିଣ (ସଂ· ସୂକ୍ଷ୍ମ)—ସରୁ; ସୂକ୍ଷ୍ମ—
Suku(khu)ma সরু সূক্ষ্ম Fine.

ସୁକୁମାର—ସଂ. ବି. ପୁଂ (କର୍ମଧା)—୧ । ଉତ୍ତମ ବାଳକ—1. Good Sukumāra boy. ୨ । ଅତି ଶିଶୁ—2. Infant; mere [ସୁକୁମାରୀ—ସ୍ତ୍ରୀ] child. ୩ । ପୁଣ୍ଡ୍ରେକ୍ଷୁ [ମେଦିନୀ]—3. A kind of sugarcane. ୪ । ବନଚମ୍ପକ (ଭ୍ରାଜକର୍ଣ୍ଣ)—4. A sort of wild flower. ୫ । ଛିକ; ଛିଙ୍କ [ ଭ୍ରାଜ କର୍ଣ୍ଣ ]—5. Sneezing. ୬ । ଶ୍ୟାମକା; ସୁଆଁ ଧାନ [ଭ୍ରାଜକର୍ଣ୍ଣ]—6. A wild grain; Panicum Frumentaceum. ୭ । ଅପାମାର୍ଗ [ବୃ. ଶ]—7. Acheranthes Aspera. (plant) ୮ । ତମାଖୁ ପତ୍ର [ବୃ. ଶ]—8. Tobacco leaf. ସଂ· ବିଣ—୧ । ଅତି କୋମଳ [ ଅମର ]—1. Very soft; delicate; tender. ୨ । କୋମଳାଙ୍ଗଯୁକ୍ତ; ଯେ କଷ୍ଟ ସହିପାରେ ନାହିଁ—2. Incapable of bearing pain; delicate-bodied; tender-bodied. ୩ । ସୂକ୍ଷ୍ମ; ସରୁ—3. Fine. ୪ । ପତଳା—4. Slender. ଦେ. ବିଣ—୧ । କୋମଳ সুকুমার शरीर ବିଶିଷ୍ଟ—1. Having a very tender सुकुमार body. [ଉ—ସହିଲେ ଦୁଃଖ ଏବେ ସୁକୁମାର ହୋଇ । କୃଷ୍ଣସିଂହ· ମହାଭାରତ, ବନ ।] ୨ । [ସ୍ତ୍ରୀ] ଯେ ଦୁଃଖ ବା କଷ୍ଟ ସହିପାରେ ନାହିଁ—2. Incapable of bearing pain and sorrow. [ ଉ—ଦଣ୍ଡେ ବସଇ ଦଣ୍ଡେ ଗୁଳ, ଅତି ସୁକୁମାର ସୁଅଳୀ । ଭୂପତି· ପ୍ରେମ ପଞ୍ଚାମୃତ ।]

ସୁକୁମାରକ—ସଂ. ବି (ସୁକୁମାର+ସ୍ୱାର୍ଥେ· କ)—ସୁକୁମାର (ଦେଖ)
Sukumāraka Sukumāra. (See)

ସୁକୁମାର କଳା—ସଂ· ବି (ଅଧୁନିକ ପ୍ରୟୋଗ)—ସୂକ୍ଷ୍ମ କଳା (ଦେଖ)—
Sukumāra kaḷā Sūkshma kaḷā. (See) (ଉ—ସୁକୁମାର କଳା ସଙ୍ଗେ ଶସ୍ତ୍ରବିଦ୍ୟା ଶିଖିଥିଲ ବାଳାବଳୀ । ରାଧାନାଥ. ଯଯାତି ।)

ସୁକୁମାର ବିଦ୍ୟା—ସଂ. ବି (ଅଧୁନିକ ପ୍ରୟୋଗ)—କଳା ବିଦ୍ୟା—
Sukumāra bidyā Arts.

ସୁକୁମାର ଶିଳ୍ପ—ସଂ. ବି (ଅଧୁନିକ ବ୍ୟବହାର)—୧ । ସୂକ୍ଷ୍ମ କଳା
Sukumāra śilpa ବିଦ୍ୟା—1. Fine arts. ୨ । ସାହିତ୍ୟାଦି ଶାସ୍ତ୍ର—2. Polite or elegant learning; belles lettres.

ସୁକୁମାରା—ସଂ· ବି (ସୁକୁମାର+ଆ)—୧ । ଜାଇ; ଜାଇଫୁଲ—
Sukumārā 1. One-pettaled Jasmine; Jasminum Grandiflorum. ୨ । ନବମାଳତୀ; ବଉଳୀ ଫୁଲ—2. A kind of flower; Jasminum Arborescens. ୩ । କଦଳୀ—3. Banana; plantain. ୪ । ସୁକୁ; ପିଡ଼ିଙ୍ଗ ଶାଗ—4. Trigonella Corniculata (pot herb). ୫ । ମାଳତୀ—5. A creeper and its flower; echites.

ସୁକୁମାରିଆ—ଦେ. ବଣ. ପୁଂ ଓ ସ୍ତ୍ରୀ (ସଂ ସୁକୁମାର)—ସୁକୁମାର (ଦେଖ)—Sukumāra. (See)
Sukumāriā
সুকুমার सुकुमार

ସୁକୁମାରିକା—ସଂ. ବି—କଦଳୀ ଗଛ (ବୃ. ଶ)
Sukumārikā Plantain tree.

ସୁକୁମାରୀ—ସଂ. ବି—୧ । ନବମାଳକା (ରାଜନିର୍ଘଣ୍ଟ); କଅଁଳୀ—
Sukumārī 1. A flower; Jasminum Arborescens. ୨ । ବନମଲ୍ଲିକା (ବୃ. ଶ)—2. Wild jasmine. ୩ । ବଡ଼ କଲରା (ବୃ. ଶ)—3. Big variety of memordica. ୪ । କଦଳୀ ଗଛ (ବୃ. ଶ)—4. Plantain tree. ୫ । ସୃକ୍କା; ପିଡ଼ଙ୍ଗ ଶାଗ (ବୃ.ଶ)—5. Trigonella Corniculata (herb) ୬। କନ୍ୟା (ବୃ. ଶ); ବାଳିକା-6. Girl. ୭। ଝିଅ (ବୃ. ଶ)-7. Daughter. ସଂ. ବଣ—ସୁକୁମାରର ସ୍ତ୍ରୀଲିଙ୍ଗ—
সুকুমারী Feminine of Sukumāra. ଦେ. ବି. ସ୍ତ୍ରୀ—
सुकुमारी, सुकुआंरी ୧ । କୋମଳାଙ୍ଗୀ ସ୍ତ୍ରୀ—1. A delicate-bodied woman. ୨ । ଯେଉଁ ସ୍ତ୍ରୀ ଶାରୀରିକ କଷ୍ଟ ସହିପାରେ ନାହିଁ—2. A woman who cannot bear physical pain. ୩ । ସ୍ତ୍ରୀ ଲୋକଙ୍କ ଦିଆଯିବା ନାମ—3. A name given to females.

ସୁକୁମାରେଇ—ଦେ. ବଣ. ସ୍ତ୍ରୀ—ସୁକୁମାରିକା ସୁକୁମାରିଆର ସ୍ତ୍ରୀଲିଙ୍ଗ—
Sukumārei The feminine form of Sukumāra or Sukumāriā.
সুকুমারী सुकुमारी

ସୁକୁର୍କୁର—ସଂ. ବି—ବାଳରୋଗବିଶେଷ ( ବୃ. ଶ )—
Sukurkura A kind of infantile disease.

ସୁକୁଳ—ସଂ. ବି—୧ । ଉତ୍ତମ କୁଳ ବା ବଂଶ—1. Good family.
Sukula ୨ । ଉଚ୍ଚବଂଶ-2. High family. ସଂ. ବଣ (ପୁଂ)—
(ସୁକୁଳା—ସ୍ତ୍ରୀ) ଉଚ୍ଚବଂଶୋଦ୍ଭବ; କୁଳୀନ ( ବୃ. ଶ )—
Of noble birth.

ସୁକୁଲା—ଗ୍ରାଦେ. ( ଗଡ଼ଜାତ ) ବି—ସିଙ୍କୋଲା ( ଦେଖ )
Sukulā Sinkolā ( See )

ସୁକୃତ୍—ସଂ. ବଣ ( ସୁ+କୃ, ଧାତୁ+କର୍ତ୍ତି. କ୍ୱିପ୍ )—୧ । ପୁଣ୍ୟବାନ୍
Sukṛut ( ଜଟାଧର )—1. Pious. ୨ । ଧାର୍ମିକ ( ବିଶ୍ୱ କୋଷ )—2. Godfearing. ୩ । ଉତ୍ତମ କାର୍ଯ୍ୟକାରୀ —3. Doing good acts.

ସୁକୃତ—ସଂ. ବଣ ( ସୁ+କୃତ )—୧ । ସୁନ୍ଦରରୂପେ ନିର୍ମିତ; ସୁନିର୍ମିତ
Sukṛuta —1. Well made. ୨ । (ପୁଂ) ସୌଭାଗ୍ୟଶାଳୀ—
(ସୁକୃତା—ସ୍ତ୍ରୀ) 2. Prosperous. ୩ । ଭାଗ୍ୟବାନ୍—3. Fortunate; lucky. [ ଉ—ଯାହାକୁ ହରି ଅନୁଭବ କରୁଛ କେତେ ସୁକୃତ ସେ ନାରୀ—ଗାଠି. ଏବଣାଦିଅ । ] ୪ । ସୁସମ୍ପନ୍ନ—4. Well accomplished. ୫ । ସୁସଙ୍ଗତ—5. Proper; befitting. ୬ । ( କର୍ତ୍ତୃ ସୁ—ଉତ୍ତମ ଅଟେ କୃତ—କର୍ମ ଯାହାର ) ପୁଣ୍ୟବାନ୍—6. Pious. ୭ । ଧାର୍ମିକ; ଧର୍ମଶୀଳ—7 Religious; godfearing. ସଂ. ବି—୧ । ପୁଣ୍ୟ ( ଅମର )—1. Piety. ୨ । ଧର୍ମ କାର୍ଯ୍ୟ—2. Religious act. ୩ । ସତ୍କର୍ମ—3. Act of religious merit; good act; virtuous act. ୪ । ଦୟା—4. Mercy; kindness. ୫ । ମଙ୍ଗଳ; ଶୁଭ (ମେଦିନୀ)—5. Bliss. ୬ । ପୁରସ୍କାର—6. Reward. ୭ । ସୌଭାଗ୍ୟ; ଭାଗ୍ୟ—7. Affluence; prosperity; good luck. [ ଉ—ସୁକୃତଙ୍କ ଯାହାର ହୋଇବ ଉଦୟ—କୃଷ୍ଣସିଂହ. ମହାଭାରତ. ବନ । ] ଦେ. ବି—୧ । ଶପଥ—1. Oath. [ଉ—
হলপ ବଳୁତ ନୃହେ ମୁଁ ସୁକୃତ କରୁଛି ଲୋଚ କୃତ ରସେ ମୋର
सौगन्ध ପ୍ରୀତି—ଉପେ. ବୈଦେହୀଶବିଳାସ । ] ୨ । ପୂର୍ବ
সুকৃত ଜନ୍ମାର୍ଜ୍ଜିତ ପୁଣ୍ୟ—2. Piety due to religious
सकृत acts performed in a previous life.

ସୁକୃତ ଅରଜିବା—ଦେ. କ୍ରି—ପୁଣ୍ୟ ଅର୍ଜ୍ଜନ କରିବା—To earn
Sukṛuta arajibā religious merit by doing
সুকৃত অর্জন করা सकृत अरजना pious acts.
( ସୁକୃତ ଅର୍ଜ୍ଜିବା—ଅନ୍ୟରୂପ )

ସୁକୃତ କରିବା—ଦେ. କ୍ରି—୧ । ପୁଣ୍ୟ କରିବା; ଧର୍ମକାର୍ଯ୍ୟ କରିବା—
Sukṛuta kariba 1. To do pious work; to do acts of religious merit.
সুকৃত করা सकृत करना
হলপ করা सौगंघ करना ୨ । ଶପଥ କରିବା—
2. To take oath.

ସୁକୃତ ପରିଣାମ(ଫଳ)—ସଂ. ବି (୬ଷ୍ଠୀ ତତ୍)—୧ । ପୁଣ୍ୟର ଫଳ—
Sukṛuta pariṇāma(phaḷa) 1. The result of pious act. ୨ । ବାଞ୍ଛିତ ସମ୍ପତ୍ତି; ଅଭିଳଷିତ ଐଶ୍ୱର୍ଯ୍ୟ—2. Wished-for bliss.

ସୁକୃତବନ୍ତ—ଦେ. ବଣ. ପୁଂ ( ସଂ. ସୁକୃତବତ୍ )—ସୁକୃତୀ (ଦେଖ)
Sukṛutabanta Sukṛutī ( See ) [ ଉ—ତୁମ୍ଭ ସର
সুকৃতবন্ত सकृतबन्त ସୁକୃତବନ୍ତ ହୋଇ କେହି—କୃଷ୍ଣସିଂହ. ମହାଭାରତ. ଅଦି । ]
(ସୁକୃତବନ୍ତୀ—ସ୍ତ୍ରୀ)

ସୁକୃତବାନ୍—ସଂ. ବଣ. ପୁଂ ( ସୁକୃତ+ଅସ୍ତି ଅର୍ଥରେ ବତ୍; ସୁକୃତ-
Sukṛutabān ବତ୍; ମୋ. ୧୨ )—ସୁକୃତୀ ( ଦେଖ )
(ସୁକୃତବତୀ—ସ୍ତ୍ରୀ) Sukṛutī ( See )

ସୁକୃତି—ସଂ. ବି ( ସୁ+କୃ ଧାତୁ+ଭାବ. ତି )—୧ । ପୁଣ୍ୟ—
Sukṛuti 1. Piety. ୨ । ସତ୍କର୍ମ—2. Act of religious merit. ୩ । ମଙ୍ଗଳ—3. Bliss. ୪ । ଅଦୃଷ୍ଟ; ଭାଗ୍ୟ—4. Luck. ଦେ. ବି ( ସ୍ତ୍ରୀ )—ସ୍ତ୍ରୀଲୋକଙ୍କୁ ଦିଆଯିବା ନାମ—
A name given to females.

ସୁକୃତୀ—ସଂ. ବଣ. ପୁଂ ( ସୁକୃତ+ଅସ୍ତି ଅର୍ଥେ, ଇନ୍; ସୁକୃତିନ୍, ମୋ.
Sukṛutī ୧୨)-୧ । ପୁଣ୍ୟବାନ୍—1. Pious. ୨ । ସତ୍କର୍ମକାରୀ
( ସୁକୃତିନୀ—ସ୍ତ୍ରୀ ) 2. Doing beneficient or good

10. Carnal enjoyment. ୧୧ । (+ଜପିଣ୍‌ ଅ +ଅ ) ଚାଟୁବାକ୍ୟ—
11. Flattery; coaxing words (Apte).

ସେବାଇ(ଏ, ୟ)ତ—ଦେ. ବ ( ସ. ସେବକ )—୧ । ସେବକ; Sebāi(e, ya)ta ଦେବତାଙ୍କ ସେବାକାରୀ—1. Person সেবায়ত सेवायत performing the services of a ସେବେଇତ } ଅନ୍ୟରୂପ Deity. ୨ । ମନ୍ଦିରର ସେବକ ସେବୈତ } ଭୃତ୍ୟ— 2. Temple servant. ୩ । ଗ୍ରାମଲୋକଙ୍କ ସେବାକାରୀ ଭଣ୍ଡାରୀ ଓ ଧୋବା— 3. Village servant ( e. g. barber, washerman etc ).

ସେବାଇ(ଏ, ୟ)ତ ମାର୍‌ଫତ୍‌ଦାର୍—ଦେ. ବ ( ସମାସ ଶବ୍ଦ )— Sebāi(e, ya)ta mār-phat-dār ଦେବତାଙ୍କର ସେବକ সেবায়ত মারফতদার ପୂଜକ ଓ ସେବା କାର୍ଯ୍ୟ ତଦାରଖ କରିବା सेवायत मारफतदार ପାଇଁ ନିଯୁକ୍ତ ବ୍ୟକ୍ତି— Servants and trustees of a Deity.

ସେବାଇ( ଏ, ୟ, ୟି, ୟେ )ତି—ଦେ. ବ—ସେବାଇତର କାର୍ଯ୍ୟ— Sebāi(e, ya, yi, ye)ti Sebāyetship; the duty or সেবায়তি सेवायती post of a temple-servant.

ସେବାଏ(ୟ, ୟେ)—ଦେଶ୍ୟ. ଅ ( ପା. ସିବା )—ଛଡ଼ା; ବ୍ୟତୀତ— Sebāe(ya, ye) Beside; except. ব্যতীত सिवा, सेवाय

ସେବା କରିବା—ଦେ. କ୍ରି—ସେବନ କରିବା ( ଦେଖ ) Sebā karibā Sebana karibā (See)

ସେବା କାକୁ—ସ. ବ ( ମ. ପ. ଲେ )—ସେବା କରିବା ସମୟରେ Sebā kāku ସେବକଙ୍କ କଣ୍ଠସ୍ୱରର ପରିବର୍ତ୍ତନ (କେତେବେଳେ ଉଚ୍ଚ, କେତେବେଳେ ନୀଚ, କେତେବେଳେ କୋମଳ କେତେବେଳେ ମଧୁର ) ( ବୃ, ଶ )— Modulation or change of voice during service (Apte).

ସେବାକାରୀ—ସ. ବଣ ଓ ବ ( ପୁଂ ) ( ସେବାକାରିନ୍ ଶବ୍ଦ )—ସେବକ Sebākāri ( ଦେଖ )—Sebaka ( See ) ( ସେବାକାରିଣୀ—ସ୍ତ୍ରୀ )

ସେବା ଖଞ୍ଜା—ଦେ. ବ—ଦେବସେବା ନିମନ୍ତେ ନିର୍ଦ୍ଦିଷ୍ଟ ସମ୍ପତ୍ତି— Sebā khañjā Endowment for the service of a দেবোত্তর देवोत्तर Deity.

ସେବା ଖଟିବା—ଦେ କ୍ରି—କୌଣସି ବ୍ୟକ୍ତିଙ୍କର ସେବା କରିବା— Sebā khaṭibā To render personal service to a সেবা করা सेवा करना person. [ ହି—ଦୂରୁ ଭାଳୁଥାନ୍ତି ଯାମିକ ଭଟ । ଅସି ପର୍ ଭୂମେ ତା ସେବା ଖଟ— କବିସୂର୍ଯ୍ୟ. ବଳଦେ. । ]

ସେବା ଦାସୀ—ଦେ. ବ ( ସେବା ନିମିତ୍ତ ରକ୍ଷିତା ଦାସୀ )—୧ । ଦେବ- Sebā dāsi ସେବା ପାଇଁ ରକ୍ଷିତା ଦାସୀ—1. Maid ser- সেবা দাসী vants entertained in a temple for सेवा दासी performing the services of Idols. ୨ । ପ୍ରଭୁଙ୍କର ସେବାକାରିଣୀ ଦାସୀ—2. A maid servant engaged for serving a master. [ ହି—ଏ ଜଣା କଙ୍କସ ସେବାଦାସୀ ଯିବା ଦେବ ଜନନୀ ଭୂମିର—ଚନ୍ଦ୍ରାମଣି. ବହ୍ନିମାଳ୍ୟ । ] ୩ । ଦାକ୍ଷିଣାତ୍ୟରେ ମନ୍ଦିରମାନଙ୍କରେ ରକ୍ଷିତା ଅବିବାହିତା ରମଣୀ ଓ କନ୍ୟା; ଜଗନ୍ନାଥ ଦେଉଳର ମାହାରୀ—3. Damsels and unmarried girls kept in temples for dancing before the Idol. ୪ । ଉପଭୋଗାର୍ଥ ରକ୍ଷିତା ସ୍ତ୍ରୀ—4. A concubine. ୫। କୌଣସି କୌଣସି ସମ୍ପ୍ରଦାୟ ଭୁକ୍ତ ବୈଷ୍ଣବଙ୍କର ରକ୍ଷିତା ଅଙ୍ଗଲଗା ମାତାଜୀ— 5. Concubines entertained by a sect of Baishṇabas for administering to the personal comforts and animal wants of the latter.

ସେବା ଧର୍ମ—ସ. ବ ( ରୂପକ )—୧ । ଅବଶ୍ୟକର୍ତ୍ତବ୍ୟରୂପେ ଗୃହୀତ Sebā dharma ସେବା କର୍ମ—1. The duty of service. ୨ । ସେବକର କର୍ତ୍ତବ୍ୟ କର୍ମ—2. The duties or ଅଙ୍ଗ—obligations of a Sebaka.

ସେବା ବୃତ୍ତି—ସ. ବ ( ରୂପକ )—ଜୀବିକାର୍ଥ ଗୃହୀତ ସେବା କର୍ମ— Seba brutti Service taken as a profession. ସ. ବଣ ପୁଂ ଓ ସ୍ତ୍ରୀ (ବହୁବ୍ରୀହି)—ସେବାର ଯାହାର ଜୀବିକା Having service as a profession.

ସେବା ବ୍ରତ—ସ. ବ—ପରୋପକାର ଓ ପରଚର୍ଯ୍ୟାରୂପ ନିୟମ— Sebā brata Religious vow taken for rendering service to humanity or to a Deity or to a cause.

ସେବା ମନ୍ଦିର—ଦେ. ବ—ସେବାଶ୍ରମ ( ଦେଖ ) Sebā mandira Sebāsrama ( See )

ସେବାୟୁଧ—ଦେ. ବ—ସେବା ନିମନ୍ତେ ଆବଶ୍ୟକ ଦ୍ରବ୍ୟସମୂହ— Sebāyudha Articles required for performing different kinds of ser- সেবায়ুধ सेवा सामग्री vices. [ ହି—ଦ୍ରବ୍ୟ ବେଶ ସବୁ ସ୍ୱାମୀ ଯାର ଯେତେ ପରିଜନ ସେବାୟୁଧ ଧରେ ଯେତେ ସବୁ ଚଳାଇଲେ—ପ୍ରାଚୀ.ଉଦୟମଞ୍ଜରୀ ।]

ସେବାର୍ହ—ସ. ବଣ(ସେବା+ଅର୍ହ ଧାତୁ+କର୍ତ୍ତୃ. ଅ)—ସେବକ ହେବାର Sebārha ଯୋଗ୍ୟ—Fit to be worshipped. ( ସେବାର୍ହା—ସ୍ତ୍ରୀ )

ସେବାଶ୍ରମ—ସ. ବ—ଯେଉଁ ଆଶ୍ରମରେ ସେବକମାନେ ନାନାପ୍ରକାରେ Sebāsrama ଦେଶସେବା ଓ ଦରିଦ୍ରସେବା କରନ୍ତି— সেবাশ্রম A place where volunteers serve the सेवाश्रम country and the poor.

ସେବା ସଂଘ—ସ. ବ ( ମ. ପ. ଲେ; ସେବା ନିମନ୍ତେ ପ୍ରତିଷ୍ଠିତ ସଂଘ )— Sebā saṁgha ଦେଶ ସେବା ପାଇଁ ଗଢ଼ା ସମାଜ—A league সেবা সংঘ सेवा संघ formed for social service.

ସେବା ଶୁଶ୍ରୂଷା—ସଂ. ବି (ଏକାର୍ଥକ ସହଚର)—କୌଣସି ବ୍ୟକ୍ତିଙ୍କର ବା
Sebā śuśrūshā ରୋଗୀର ପରିଚର୍ଯ୍ୟା—
Nursing of a patient or person.

ସେବା ସମର୍ପଣ—ସଂ. ବି—ଦେବ ମୂର୍ତ୍ତିଙ୍କ ପରିଚାଳନ କରିବା ପାଇଁ
Sebā samarpaṇa କୌଣସି ବ୍ୟକ୍ତିଙ୍କ ହସ୍ତରେ ଦେବତାଙ୍କ
সেবা সমর্পণ ସେବାର ଅର୍ପଣ—Consignment or gift
सेवा समर्पण of the service of a Deity to a person in trust.

ସେବାସମର୍ପଣ ପତ୍ର—ଦେ. ବି (କଚେରୀ)—ଯେଉଁ ଦଲିଲ ଦ୍ୱାରା ଜଣେ
Sebāsamarpaṇa patra ବ୍ୟକ୍ତି ଦେବତାଙ୍କ ସେବାକୁ
সেবাসমর্পণপত্র सेवासमर्पणपत्र ଅନ୍ୟ ବ୍ୟକ୍ତିଙ୍କ
ଠାରେ ଅର୍ପଣ କରେ—A trust deed conveying the service of an Idol to another person.

ସେବାସି—ଗ୍ରା. ବି—ସେବକ (ଦେଖ)—
Sebāsi Sebaka (See).

ସେବି—ସଂ. ବି—୧। ସେଓଫଳ—1. Apple. [ବି—ଏହା ବାତ-
Sebi ପିତ୍ତହର, ଗୁରୁ, ବୃଂହଣ, ବଳକର, କଫକର, ବୃଷ୍ୟ ଓ
ପାଚିଲେ ସ୍ୱାଦୁ।] ୨। ବଦରଫଳ; ବରକୋଳି(ହି.ଶ.)-
Jujube (Apte) tree and berry.

ସେବିକା—ଦେ. ବିଣ. ସ୍ତ୍ରୀ (ସଂ. ସେବକା)—ସେବକର ସ୍ତ୍ରୀଲିଙ୍ଗ—
Sebikā Feminine of 'Sebaka' [ବି—ସେବକର ସ୍ତ୍ରୀ-
সেবিকা सेविका ଲିଙ୍ଗରୂପ ସଂସ୍କୃତ ବ୍ୟାକରଣ
ଅନୁସାରେ ସେବକା ଅଟେ, କିନ୍ତୁ ଭାଷାରେ କେହି କେହି
ସେବକୀ ଓ ସେବିକା ଲେଖନ୍ତି; କିନ୍ତୁ ଏହା ବ୍ୟାକରଣ-
ବିରୁଦ୍ଧ ବ୍ୟବହାର।] ସଂ.ବି—ପକ୍ୱାନ୍ନ ବିଶେଷ; ସିମେଇ—
সেমই सेव, सेवई Vermicelli.
[ବି—ମଇଦାକୁ ଦଳି ଏଥିରୁ ବଡ଼ ସରୁ ସରୁ ଲମ୍ବ
ଖଣ୍ଡମାନ କରି ତାକୁ ଖରାରେ ଶୁଖାଇ ଦୁଗ୍ଧ, ଶର୍କରା ଓ
ଘୃତରେ ମୃଦୁ ଅଗ୍ନିରେ ପାକ କରି ଏହା ପ୍ରସ୍ତୁତ କରାଯାଏ
(ଭାବପ୍ରକାଶ)। ଏହା ତର୍ପଣୀ, ବଲ୍ୟା, ଗୁର୍ବୀ, ପିତ୍ତ-
ଆନିଳହରା, ଗ୍ରାହିଣୀ, ସନ୍ଧିକୃତ୍, ରୁଚ୍ୟ। ଏହାକୁ ଅତି
ମାତ୍ରାରେ ଖାଇବା ନାହିଁ। ଆଉ ଏକପ୍ରକାର ଖୁବ୍ ସରୁ
ଲମ୍ବା ଲମ୍ବା ସିମେଇ ତିଆରି କରାଯାଏ। ମଇଦାକୁ ବା ବୁଟ
ବେସନକୁ ପାଣିରେ ଚକଟି ଛାଲଚଟୁ ଉପରେ ଲେଉଟରେ
ତାକୁ ମଳିଲେ ଛାଲଚଟୁର ଛିଦ୍ର ବାଟେ ସରୁ ସୂତା ପରି
ବାହାରୁଥିବା ଖଣ୍ଡମାନ କଡ଼ାଇ ଉପରେ ଫୁଟୁଥିବା ଘିଅରେ
ବା ତେଲରେ ପକ୍ୱ ହୁଏ। ଏହାକୁ ଭୁଜିଆ ସିମେଇ
ବୋଲାଯାଏ।]

ସେବି(ଭି)ଙ୍ଗ୍—ବୈଦେ.ବି(ଇଂ)—ବ୍ୟୟରୁ ଉଦ୍‌ବୃତ୍ତ ଧନର ସଞ୍ଚୟ—
Sebi(bhi)ṇg Saving of money.
সেভিঙ্গ् सेविंग [ସେବଂ (ଇଂ)—ଅଶୁଦ୍ଧ ଆକାର]

ସେବି(ଭି)ଙ୍ଗ୍‌ସ୍ ବା(ବ୍ୟା,ବେ)ଙ୍କ—ବୈଦେ. ବି. (ଇଂ)—ଯେଉଁ ଠାରେ
Sebi(bhi)ṇg-s ba(byā,be)ṇk ଲୋକେ ଜଳ ଜଳର ଉଦ୍‌ବୃତ୍ତ
সেভিঙ্গ্‌স ব্যাঙ্ক सेविंग्सबैंक ଧନକୁ ନିରାପଦ ପାଇଁ
ରଖିଥାନ୍ତି ଓ ଆବଶ୍ୟକ ପଡ଼ିଲେ ସେଠାରୁ ଧନ ଆଣି
ପାରନ୍ତି (ଏଥିରେ କିଛି ସୁଧ ମଧ୍ୟ ମିଳେ)—Savings bank.

ସେବିତ—ସଂ. ବିଣ (ସେବ୍ ଧାତୁ+କର୍ମ. ତ)—୧। ଉପାସିତ;
Sebita ଆରାଧିତ; ପୂଜିତ—1. Worshipped.
(ସେବିତା—ସ୍ତ୍ରୀ. ବିଣ) ୨। ଉପଭୁକ୍ତ—2. Enjoyed; partaken of. ୩। ଅଧ୍ୟୁଷିତ—3.Inhabited.
[ଉ—ସିଂହ, ବ୍ୟାଘ୍ର, ମୃଗରେ ସେବିତ ହୋଇଅଛି—
କୃଷ୍ଣସିଂହ. ମହାଭାରତ ବନ।] ୪। ଆଶ୍ରିତ; ଯାହାଙ୍କଠାରୁ
ଆଶ୍ରୟ ନିଆ ଯାଇଅଛି—4. Resorted to. ୫। ରକ୍ଷିତ
5. Protected. ୬। ଅଭ୍ୟସ୍ତ—6. Practised.
୭। ବ୍ୟବହୃତ—7. Used. ୮। ଯାହାଙ୍କର ସେବା
ବା ପରିଚର୍ଯ୍ୟା କରା ଯାଇଅଛି—8. Served; looked after; tended. ସଂ. ବି—ସେବ (ଦେଖ) (ହି. ଶ)—
Sebi (See).

ସେବିତବ୍ୟ—ସଂ.ବିଣ.ପୁଂ—୧। (ସେବ ଧାତୁ+କର୍ମ.ତବ୍ୟ)—ସେବିତ
Sebitabya ହେବା ଯୋଗ୍ୟ—Fit to be served, tended, worshipped etc. ୨। (ସିବ ଧାତୁ+
କର୍ମ. ତବ୍ୟ) ସିଲାଇ କରାଯିବା ଯୋଗ୍ୟ (ହି. ଶ)—
(ସେବିତବ୍ୟା—ସ୍ତ୍ରୀ) 2. Fit to be sewn.

ସେବିତା—ସଂ. ବିଣ—୧। (ସ୍ତ୍ରୀ) (ସେବିତ+ଆ)—ସେବିତର ସ୍ତ୍ରୀଲିଙ୍ଗ,
Sebitā Feminine of Sebita. ୨। (ପୁଂ)
(ସେବ ଧାତୁ+କର୍ତ୍ତୃ ତୃ; ୧ମା. ୧ବ)—ସେବାକାରୀ—
(ସେବିତ୍ରୀ—ସ୍ତ୍ରୀ) Performing service etc.
ସଂ.ବି—୧। (ପୁଂ) ସେବକ (ଦେଖ) Sebaka (See)
୨। (କ୍ଲୀ) (ସେବକ୍+ଭାବ ତା)—ସେବକର କର୍ମ—
Servitude

ସେବି ଫଳ—ସଂ. ବି—ସେବି (ଦେଖ)
Sebi phaḷa Sebi (See);

ସେବିବା—ଦେ.କ୍ରି (ସଂ.ସେବଧାତୁ) (ପଦ୍ୟ)—୧। ସେବା କରିବା; ଭଜିବା—
Sebibā 1. To serve.[ଉ—ନୋହିଲେ ଅବା ଆନ ନୃପଙ୍କ
ସେବାକରୀ ସେବିବ। କୃଷ୍ଣସିଂହ. ମହାଭାରତ. ବନ।] ୨। (ତୀର୍ଥାଦିକୁ)
सेवना ଯିବା—2.To go to; to frequent.(ଉ—ନାନା ତୀର୍ଥ
ସେବି, ଶୁଣେ ଆସିଣ ମିଳିଲେ। ରାଧାନାଥ. ମହାଯାତ୍ରା।]

ସେବୀ—ସଂ. ବିଣ. ପୁଂ (ସେବିନ୍ ଶବ୍ଦ; ସେବ୍ ଧାତୁ+କର୍ତ୍ତୃ. ଇନ୍; ୧ମା
Sebī ୧ବ)—ଯେ ସେବା କରେ; ସେବକ (ଦେଖ)—One
(ସେବିନୀ—ସ୍ତ୍ରୀ) who enjoys or partakes of a thing.
[ବି—ଏହା ଅନ୍ୟ ଶବ୍ଦ ସହିତ ସମାସରେ ଯୁକ୍ତ ହୁଏ।
ଯଥା—ଅହିଫେନସେବୀ, ମାଦକସେବୀ ଇତ୍ୟାଦି।]

ସେବେ—ଦେ. ଅ—୧। ସେକାଳରେ—1. At that time.
Sebe ୨। ପୂର୍ବେ—2. In the past.
সেকালে उस समयमें

ସେବେଟି—ଗ୍ରା. ବି (ସଂ. ସେବତୀ ଶବ୍ଦର ଅଶୁଦ୍ଧ ଉଚ୍ଚାରଣ)—
Sebeti ସେବତୀ (ଦେଖ)—Sebati (See)

ସେବ୍ୟ—ସଂ. ବିଣ (ସେବ୍ ଧାତୁ+କର୍ମ. ଯ)—ସେବନୀୟ; ସେବାର୍ହ
Sebya (ସେବ ଧାତୁର ସମସ୍ତ ଅର୍ଥ ଦେଖ)—Fit to
(ସେବ୍ୟା—ସ୍ତ୍ରୀ) be enjoyed or worshipped. etc.
ବି—୧ । ଖାଉଣ ମୂଳ; ବେଣାଚେର—1. The root of the 'Benā' grass. ୨ । ଅଶ୍ୱତ୍ଥ ବୃକ୍ଷ (ରାଜନିର୍ଘଣ୍ଟ)—2. Ficus Religiosa tree. ୩ । ହିଜ୍ଜଳ ବୃକ୍ଷ (ଶବ୍ଦ ରତ୍ନାବଳୀ)—3. Barringtonia Acutangulia. ୪ । ସେବକର ପ୍ରଭୁ—4 The master of a servant (Apte). ୫ । ଲାମଜ୍ଜକ ତୃଣ (ବୈ. ଶ)—5. A kind of grass. ୬ । ରକ୍ତଚନ୍ଦନ (ବୈ. ଶ)—6. Sappan wood. ୭। ସୁଗନ୍ଧବାଲା; କୁରୁବେଲ (ବୈ. ଶ)—7. Pavonia Odorata. ୯ । ସାମୁଦ୍ର ଲବଣ (ବୈ. ଶ)—9. Sea salt. ୧୦। ଜଳ (ବୈ ଶ)—10. Water. ୧୧ । ଜଳପକ୍ଷି ବିଶେଷ (ବୈ. ଶ) (ଜଳଗୌରେୟା ପକ୍ଷୀ)—11. A kind of aquatic bird.

ସେବ୍ୟକ—ଦେ. ବି— ( ବୈଦ୍ୟକ; ସଂ. ସେବ୍ୟ ) — ବେଣାଚେର—The root of Benā grass.
Sebyaka
সেব্যক,বেঁণার মূল खसखस

ସେବ୍ୟ ସେବକ—ସଂ. ବି ପୁଂ—(ପୁଂ)—ଦ୍ୱିବଚନ—ପ୍ରଭୁ ଓ ଭୃତ୍ୟ—
Sebya sebaka Master and servant.
(ସେବ୍ୟା ସେବକା—ସ୍ତ୍ରୀ)

ସେବ୍ୟା—ସଂ. ବି. ସ୍ତ୍ରୀ—୧ । ବନ୍ଦାବୃକ୍ଷ (ଶବ୍ଦ ରତ୍ନାବଳୀ) ବନ୍ଦାକ; ମଲଙ୍ଗ—1. A parasitic plant; Loranthus Longifolius. ୨ । ଅଁଳା; ଅମଳକୀ (ବୈ. ଶ)—2.Embelic Myrobalan. ୩ । ଏକ ପ୍ରକାର ଜଙ୍ଗଲି ଧାନ (ବୈ. ଶ)—3. A kind of wild paddy. ସଂ. ବିଣ.ସ୍ତ୍ରୀ—ସେବ୍ୟଶବ୍ଦର ସ୍ତ୍ରୀଲିଙ୍ଗ—Feminine of Sebya.
sebyā

ସେ ଭଳି—ଦେ. ଅ—୧ । ସେହି ପ୍ରକାରର; ସେପରି—1.Of that kind or nature. ୨ । ତାହାରି ସମାନ—2 Like that; similar to that. (ଦୃ—ସେ ଭଳି ସେବକ ଆଉ ନ ଦେଖି ଭାରତେ, ଭରତ ସେ ଖାଣ ଏବେ ଧରନ୍ତି ଶିରେ । ରାଧାନାଥ—ମହାଯାତ୍ରା ।)
Se bhali
সেবকম
उसतरह

ସେଭିଙ୍ଗ୍ସ ବା(ବ୍ୟା,ବେ)ଙ୍କ୍—ବୈଦେ. ବି (ଇଂ)—ଡାକଘରେ ଏକ ବିଭାଗ କିମ୍ବା ଅନ୍ୟ ବାଙ୍କ୍, ଯହିଁରେ ଲୋକେ ଆପଣାର ଇଚ୍ଛାରେ ଧନ ଜମା ରଖନ୍ତି ଓ ଆବଶ୍ୟକବେଳେ ଅଣନ୍ତି ଏବଂ ଟଙ୍କା ଯେତେ ଦିନ ଜମା ରହେ ସେତେଦିନ ପାଇଁ ଜମା ଟଙ୍କାର କିଛି ସୁଧ ପାଆନ୍ତି—Savings Bank. [ଦୃ—ଡାକ ଘରର ସେଭିଙ୍ଗ୍ସ୍ ବାଙ୍କ୍କୁ ପୋଷ୍ଟାଲ୍ ସେଭିଙ୍ଗ୍ସ୍ ବାଙ୍କ୍ Postal Savings Bank କହନ୍ତି ।]
Sebhings bā(byā,be)nk
সেভিঙ্‌স ব্যাঙ্ক
सेविंगबैंक

ସେମଏ—ବୈଦେ. ବି ( ଫ୍ରେଞ୍ଚ୍—ସାମୋଏ ) — ଏକପ୍ରକାର ଇଉରୋପୀୟ ଛେଳି—Chamoise. [ ଦୃ—ଏହାର ଚମଡ଼ା ଅତି ନରମ । ଚଷମା ଓ ଗହଣା ଆଦକୁ ସୁନ୍ଦରରୂପେ ଚାଲିସ୍ କରିବା ପାଇଁ ଏହା ବ୍ୟବହୃତ ହୁଏ ।]
Semae
সেময়
सेमये

ସେମଏ ଲେଦର୍ (ଚମଡ଼ା)—ବୈଦେ. ବି ( ଫ୍ରେଞ୍ଚ୍. ସାମୋଏ+ଇଂ. ଲେଦର୍)—ସେମଏ ଛେଳିର ଚର୍ମ—Chamois leather.
Semae ledar(chamaṛḍā)
সেময় লেদব सेमए लेदर

ସେମଟା—ଦେ. ବିଣ ( ସଂ. ଶୀର୍ଣ୍ଣ କିମ୍ବା ଶିମ୍ ) —୧ । ଶୁଖିଯାଇ କ୍ଷୀଣ ବା ଶୀର୍ଣ୍ଣ ହୋଇଥିବା; ଜୀର୍ଣ୍ଣ ଶୀର୍ଣ୍ଣ—1. Emaciated; withered. ୨ । କ୍ଷୀଣକାୟ—2 Thin; lean.
Semaṭā
(ସେମଟୀ—ସ୍ତ୍ରୀ)
সিটকান सिकुड़ा

ସେମଟା(ଟେ)ଇବା—ଦେ. କ୍ରି—୧। ସେମଟିବା କ୍ରିୟାର ଣିଜନ୍ତ ରୂପ—1. Causative from of Semaṭibā. ୨ । ଶୀର୍ଣ୍ଣ କରିବା—2. To cause to become lean.
Semaṭā(ṭe)ibā
সিটাকে দেওয়া
सिकुड़ाना

ସେମଟିବା—ଦେ. କ୍ରି—ଜୀର୍ଣ୍ଣ ଶୀର୍ଣ୍ଣ ହେବା—To become lean and thin.
Semaṭibā
(ସେମିଟିଯିବା—ଅନ୍ୟରୂପ) সিটিকা सिकुड़ना

ସେ ମ(ମି, ମେ)ତି—ଗ୍ରା. ଅ—୧ । ସେପରି; ତେମନ୍ତ; ସେହିପରି—1. Like that. ୨ । ତତ୍ ସଦୃଶ—2. Similarly. ୩। ସେହି ପ୍ରକାରେ—3. In that manner. [ଦୃ—ଶ୍ରୀମ ସଙ୍ଗେ ହରିଲି ମୋତେ ସେ ସେମତି । କୃଷ୍ଣସିଂହ, ମହାଭାରତ. ସଭା ।]
Se ma(mi me)ti
ସେମନ୍ତ(କ୍ଷି) } ଅନ୍ୟରୂପ
ସେମତେ
তেমন
वैसा

ସେମ(ମି, ମେ)ତିକା—ଗ୍ରା. ଅ—ତେମନ୍ତ; ତେମନ୍ତ; ସେହି ପ୍ରକାରର—Of that kind; similar to that.
Sema(mi, me)tika
[ସେମ(ମି, ମେ)ତିକଅ—ଅନ୍ୟରୂପ]
সেই রকম वैसा

ସେ ମାଦାରେ—ଗ୍ରା ଅ—୧ । ସେହି ଯୋଗୁଁ; ସେହି ହେତୁରୁ—1. For that reason. ୨ । ସେହି ସମ୍ପର୍କରେ—2. In that connection.
Se mādāre
সেই জন্য
उस कारणसे

ସେମାଫୋର୍—ବୈଦେ. ବି ( ଇଂ ) ( ରେଳ ବ୍ୟବହୃତ ଶବ୍ଦ )—ରେଳ ଷ୍ଟେସନର ଖଣ୍ଡୁରେ ଯୋଚା ହୋଇଥିବା ସୂଚକ ଖୁଣ୍ଟି; ସିଗ୍ନାଲ୍ ଖୁଣ୍ଟି—Railway signal post; semaphore.
Semāphor
সিমা ফোর্
सेमाफोर

ସେମାନେ—ଦେ. ସର୍ବ (ସଂ. ତତ୍ ଶବ୍ଦ; ବହୁବଚନ)—କର୍ତ୍ତୃ ବ୍ୟକ୍ତିମାନେ—They.
Semāne
তাহারা वे सब

ସେମାହି—ବୈଦେ. ବିଣ (ଫା. ସେ=ତିନ+ମାହ୍=ମାସ+ଇ)—ତୈମାସିକ—Quarterly. ବି—ତିନମାସ କାଳ—Quarter; a period of three months.
Semāhi
সেমাহি
सेमाही

ସେମି—ବୈଦେ. ଵଣ (ଇଂ. ଅନ୍ୟ ଇଂରାଜୀ ଶବ୍ଦ ସଙ୍ଗେ ବ୍ୟବହୃତ,
Semi ଯଥା—ସେମିକୋଲନ୍, ସେମି ସର୍କଲ୍, ସେମି ଅଫିସିଅଲ୍)—ଅର୍ଦ୍ଧ—Half.
সেমি सेमी

ସେମି ଅଫିସିଅଲ୍—ବୈଦେ. ଵଣ (ଇଂ)—କର୍ମଚାରୀମାନଙ୍କ ମଧ୍ୟରେ
Semi aphisial ଚଳବା କର୍ମସଂକ୍ରାନ୍ତ ଓ ଘରୋଇ ମିଶା (ଅର୍ଦ୍ଧ)—Semi official.
সেমি অফিসিঅল্ सेमि आफिशियल

ସେମିକୋଲନ୍—ବୈଦେ. ଵ (ଇଂ)—ରଚନାରେ ଭାବପ୍ରକାଶର ସମାପ୍ତି
Semikolan ହୋଇ ନ ଥିବା ବାକ୍ୟ ପରେ ବ୍ୟବହୃତ ଚିହ୍ନ—Semicolan.
সেমিকোলন্ सेमीकोलन

ସେମିଜ୍(ଜି)—ବୈଦେ. ଵ (ଇଂ. ଫ୍ରେଞ୍ଚ୍ ସେମିଜ୍)—ସ୍ତ୍ରୀଲୋକମାନଙ୍କ
Semij(ji) ଦ୍ୱାରା ପିନ୍ଧାଯିବା ଏକ ପ୍ରକାର ଲମ୍ବାକୁର୍ତ୍ତା—Chemise.
সেমিজ্ सेमीज
[ଦ୍ର—ଏହା ବେକ ପାଖରୁ ଅଣ୍ଟୁ ତଳକୁ ନଇଁଗୋଡ଼ି ପର୍ଯ୍ୟନ୍ତ ଲମ୍ବି ଥାଏ ଓ ଏଥିରେ ହାତ ନ ଥାଏ କମ୍ବା କାନ୍ଧ ପର୍ଯ୍ୟନ୍ତ ଅସ୍ତିନ୍ ଥାଏ । ଏହାକୁ ପିନ୍ଧି ଏହା ଉପରେ ଭାରତୀୟ ସ୍ତ୍ରୀମାନେ ଶାଢ଼ୀ ପିନ୍ଧନ୍ତି ।]

ସେମିଟିକ୍—ବୈଦେ. ଵଣ (ହେବ୍ରୁ ସେମ୍ ନାମରୁ)—ହେବ୍ରୁ ଜାତୀୟ
Semitik ସେମ୍ ନାମକ ବ୍ୟକ୍ତିଙ୍କ ବଂଶଧର ଓ ସେମାନଙ୍କ
সেমিটিক ଭାଷା ସମ୍ବନ୍ଧୀୟ—Relating to the descen-
सेमिटिक dants of Shem and their language; Semitic. ଵ—୧ । ମନୁଷ୍ୟମାନଙ୍କର ଆଧୁନିକ ବର୍ଗର ଶାଖା ବିଶେଷ—1. A branch of the people of the world according to the modern classification; the Semitic branch of humanity. [ଦ୍ର—ଏହି ବର୍ଗରେ ପ୍ରାଚୀନ ଓ ଆଧୁନିକ ଇହୁଦୀ, ଆରବୀ, ସୀରୀୟ, ମିଶ୍ର ଦେଶୀୟ ଆଦି ଭୂମଧ୍ୟ ସାଗରର ଉପକୂଳବାସୀ ଜାତିମାନେ ଅନ୍ତର୍ଭୁକ୍ତ । ମୋଜେସ୍, ଯୀଶୁ, ମହମ୍ମଦ୍ ଏହି ବର୍ଗରେ ପଡ଼ନ୍ତି । ଏ ବର୍ଗ ଆର୍ଯ୍ୟ ବର୍ଗଙ୍କଠାରୁ ପୃଥକ୍ । ହୃ. ଶ] ୨ । ଉପର୍ଯ୍ୟୁକ୍ତ ବର୍ଗର ବ୍ୟକ୍ତିମାନଙ୍କ କଥିତ ଭାଷାମାନ—2. Thee Smitic languages. [ଦ୍ର—ଇବ୍ରାନୀ, ଅରବୀ, ଆସୀରୀୟ, ଫିନିସୀୟ ଭାଷାମାନ ଏହି ବର୍ଗର ଅନ୍ତର୍ଗତ । ଏହା ଆର୍ଯ୍ୟବର୍ଗୀୟ ଭାଷାମାନଙ୍କଠାରୁ ପୃଥକ୍ । ହୃ. ଶ]

ସେମି(ମେ)ଟି ଯିବା—ଦେ. କ୍ରି—ସେମିଟିବା (ଦେଖ)
Semi(me)ti jiba Semitiba (See)

ସେମିନା(ନେ)ରୀ—ବୈଦେ. ଵ (ଇଂ)—ଶିକ୍ଷାଳୟ; ବିଦ୍ୟାଳୟ—
Semina(ne)ri Seminary. (ଯଥା—ମୋହେମ ସେମିନାରୀ ।)
সেমিনারী सेमीनरी

ସେମି ସର୍କଲ୍—ବୈଦେ. ଵ (ଇଂ)—ବୃତ୍ତାର୍ଦ୍ଧ—
Semi sark-l Semicircle.
(ସେମି ସର୍କ୍—ଅନ୍ୟରୂପ) সেমি সার্কল सेमी सर्कल

ସେମ୍ବୀ—ପ୍ରାଦେ (ଗଡ଼ଜାତ) ଵ (ତୁଳ. ହି. ସେମ୍, ସେମା=ଶିମ୍)—
Semi ଶିମ୍—Bean.

ସେମେଇ—ଦେ. ଵ—ସିମେଇ (ଦେଖ)
Semei Simei (See)

ସେମୁଏଲ୍—ଦେ. ଵ (ହେବ୍ରୁ ନାମ)—ସାମୁଏଲ୍ (ଦେଖ)
Semuel Sāmuel (See

ସେମ୍ବର—ପ୍ରାଦେ (ବସ୍ତର) ଵ—ପାଲଧୁଆ ଗଛ—
Sembara The Indian coral tree.

ସେମ୍ବି—ପ୍ରାଦେ (ସମ୍ବଲପୁର) ଵ (ସ. ଶିମ୍ବ)—ଶିମ୍ବ—
Sembi Bean.

ସେୟା—ଗ୍ରା. ସର୍ବ । ସେଇଆ (ଦେଖ)
Seyā Seiā (See)

ସେର୍—ବୈଦେ. ଵ (ଫା. ସେର୍=ବ୍ୟାଘ୍ର)—ମୁସଲମାନମାନଙ୍କ
Ser ନାମ ପୂର୍ବରେ ବସିବା ସାହସିକବ୍ୟଞ୍ଜକ ଉପାଧିବିଶେଷ—
সের शेर A title prefixed to names of Mahomedans indicating might or heroism (literally; a tiger).

ସେର୍ ଅ(ଆ)ଲି—ଦେ. ଵ (ନାମ)—ଅଫଗାନସ୍ଥାନବାସୀ ଜନୈକ ଅତତାୟୀ—Sher Ali, name of an assassin of
Ser a(ā)li
সেরআলি Lord Mayo in the Andamans in 1872.
शेरआली [ଦ୍ର—ଭାରତର ବଡ଼ଲାଟ ଲର୍ଡ୍ ମେୟୋ ଆଣ୍ଡାମାନ
(ସେର୍ ଅଫଗାନ୍—ଅନ୍ୟରୂପ) ଦ୍ୱୀପ (କଳାପାଣି)କୁ ପରିଦର୍ଶନ କରିବାକୁ ଯାଇଥିବା ସମୟରେ ସେଠାରେ ନରହତ୍ୟା ଦୋଷୁଁ ଯାବଜ୍ଜୀବନ ଦ୍ୱୀପାନ୍ତର ଦଣ୍ଡ ଭୋଗ କରୁଥିବା ଏହି ବ୍ୟକ୍ତି ୧୮୭୨ ସାଲରେ ବଡ଼ଲାଟଙ୍କ ଦେହରେ ଛୋରୀ ଭୁଷି ତାଙ୍କୁ ମାରି ପକାଇଥିଲେ । ଏ ବ୍ୟକ୍ତି ଅଫଗାନସ୍ଥାନବାସୀ, କନାକେତେ ପେଶାବାରରେ ଇଂରାଜ ସେନାପତିଙ୍କର ଅଶ୍ୱାରୋହୀ ଅର୍ଦ୍ଦଲୀ ( Orderly ) କାର୍ଯ୍ୟ କରୁଥିଲା । ପରେ ଏ ନରହତ୍ୟା ଅପରାଧରେ ଅଭିଯୁକ୍ତ ହୋଇ ଆଣ୍ଡାମାନ ଦ୍ୱୀପରେ ଯାବଜ୍ଜୀବନ ଦ୍ୱୀପାନ୍ତର ଦଣ୍ଡ ଭୋଗ କରୁଥିବା ଅବସ୍ଥାରେ ବଡ଼ଲାଟଙ୍କୁ ହତ୍ୟା କଲା ଓ ଏଥିର ଦଣ୍ଡସ୍ୱରୂପ ଫାଶୀ ପାଇଲା ।]

ସେର୍ନା—ପ୍ରାଦେ (ସମ୍ବଲପୁର) ଵ—ସେରଣା ମାଛ—
er-nā A kind of fresh water fish

ସେର୍ ପେଟିବା—ପ୍ରାଦେ (ପାଟଣା) କ୍ରି—ଲୁଚିଯିବା; ଲୁଚିଯିବା—
Ser petibā To hide oneself, to lay hidden.

ସେର୍ ବବର୍—ବୈଦେ. ଵ (ଫା. ବବୁରବାଲ ପରି କେଶରଯୁକ୍ତ ବ୍ୟାଘ୍ର)—ସିଂହ—Lion.
Ser-babbar
সেরববর शेरबबर

ସେର୍ଷ—ପ୍ରାଦେ (ଖଡ଼ିଅଳ) ଵ (ସଂ. ସର୍ଷପ)—ସୋରିଷ—
Ser-sha Mustard seed.

ସେର୍ଷଁ—ପ୍ରାଦେ (ଲହଡା) ଵ—ସୋରିଷ—
Sershañ Mustard seed.

ସେର୍ଷୋ—ପ୍ରାଦେ. (ଗଡ଼ଜାତ, ଖଡ଼ିଅଳ ଓ ସମ୍ବଲପୁର) ଵ—
Ser-sho ସୋରିଷ—Mustard seed.

ସେର୍ ସାହା—ଦେ. ବ ( ଫା. ନାମ )—ଭାରତରେ ପଠାଣ ସାମ୍ରାଜ୍ୟର
Ser sahā ପୁନଃ ସ୍ଥାପକ ବ୍ୟକ୍ତି—Name of an invader
সেবসাহা who re-established the Pathan
शेरशाह empire in North India; Sher Saha.
[ ଦ୍ର—ଏ ଅଫଗାନ୍‌ବଂଶୀୟ ଥାଇ ବାବରଙ୍କ ଅଧୀନ ବହାରର ଜଣେ ଜାଗିରଦାର ଥିଲେ । ବାବରଙ୍କ ମୃତ୍ୟୁ ପରେ ଏ ହୁମାୟୁନଙ୍କ ସଙ୍ଗେ ଯୁଦ୍ଧ କରି କୌଶଳରେ ହୁମାୟୁନଙ୍କୁ ଶୋଣ ଓ ଗଙ୍ଗା ନଦୀ ସଙ୍ଗମ ଚଉଶାଠାରେ ଓ କାନ୍ୟକୁବ୍ଜଠାରେ ୧୫୩୯ ଖ୍ରୀଷ୍ଟାବ୍ଦରେ ଧ୍ୱସ୍ତ କରି ଦିଲ୍ଲୀର ସିଂହାସନରେ ନିଜକୁ ସମ୍ରାଟ୍ ଘୋଷଣା କରି ୧୫୪୦ଠାରୁ ୧୫୪୫ ପର୍ଯ୍ୟନ୍ତ ସମ୍ରାଟ୍ ହେଲେ ଓ ହୁମାୟୁନ୍ ପାରସ୍ୟକୁ ପଳାଇଲେ । ଏହାଙ୍କ ମୃତ୍ୟୁ ପରେ ଏହାଙ୍କ ପୁତ୍ର ଇସ୍ଲାମ୍ ବା ସେଲିମ୍ ସାହା ୧୫୫୨ ପର୍ଯ୍ୟନ୍ତ ଓ ସେଲିମ୍‌ଙ୍କ ଭାଇ ଅଦଲ୍ ସାହା ୧୫୫୫ ପର୍ଯ୍ୟନ୍ତ ଓ ଅଦଲ୍ ସାହାଙ୍କର ଜଣେ ଭଣେଇ ତାପରେ କେତେକ ମାସ ପର୍ଯ୍ୟନ୍ତ ସମ୍ରାଟ୍ ହେଲା ପରେ ହୁମାୟୁନ୍ ପାରସ୍ୟରୁ ସୈନ୍ୟ ସଂଗ୍ରହ କରି ପୁଣି ଦିଲ୍ଲୀର ସମ୍ରାଟ୍ ହେଲେ । ସେର୍ ସାହା ତାଙ୍କ ରାଜତ୍ୱ କାଳରେ ଅନେକ ଦେଶହିତକର କାର୍ଯ୍ୟ କରିଥିଲେ । ସେ ରାସ୍ତାର ଦୁଇ ପାର୍ଶ୍ୱରେ କୂଅ ଖୋଳି, ଗଛ ପୋତି, ଘର (ସରାଇ) ତିଆରି କରି ଅନେକଗୁଡ଼ିଏ ସଡ଼କ ତିଆରି କରାଇ ଥିଲେ ଏବଂ ଏହି ରାସ୍ତା ବାଟେ ରାଜଡାକ ଯିବା ଆସିବା କରୁଥିଲା । ଇନ୍ଦ୍ରପ୍ରସ୍ଥ ବା ଦିଲ୍ଲୀରେ ସେର୍ ସାହା ଗୋଟିଏ ବଡ଼ ମସ୍‌ଜିଦ୍ ତାଙ୍କ ନାମରେ ନିର୍ମାଣ କରାଇ ଥିଲେ । ମାରବାଡ଼ ଓ ମେବାରର ରାଜପୁତଙ୍କ ସଙ୍ଗେ ସେର୍ ସାହା ଯୁଦ୍ଧରେ ବ୍ୟାପୃତ ଥାଇ ଚତୋର ଅଧିକାର କରିଥିଲେ, କିନ୍ତୁ ବିନ୍ଧ୍ୟପର୍ବତସ୍ଥ କାଲିଞ୍ଜର ଦୁର୍ଗ ଅବରୋଧ କରିବା ସମୟରେ ୧୫୪୫ ରେ ନିହତ ହେଲେ ।]

ସେର୍‌ସେଟା—ପ୍ରାଦେ (ଲଇଥ) ବି—ଶୁଖି ଯାଉଥିବା ଘାଆ ଉପରର
Ser-setā ଖୋଳପା—Stiff slough formed on a convalescent sore.

ସେର—ଦେ. ବି ( ସଂ ଶରାବ )—ଶେର (ଦେଖ)—Sera (See).
Sera ପ୍ରାଦେ ( ଯାଜପୁର ) ବି—ମାର୍ଗଶିର ମାସ
সের शेर ଗୁରୁବାରଦିନ କରାଯିବା ଲକ୍ଷ୍ମୀ ପୂଜା; ମାଣବସା—The worship of Goddess Lakshmi in the shape of a measuring pot filled with paddy on a Thursday of the month of 'Mārgasira', ପ୍ରାଦେ ( ସିଂହଭୂମି ) ବି—୮୦ ତୋଳା ଓଜନ—A weight of 80 tolās or rupees.

ସେ ରଙ୍ଗେ—ପ୍ରାଦେ ( ବଲାଙ୍ଗିର ପାଟଣା ) କ୍ରି. ବିଣ—
Se-range ସମ୍ପୂର୍ଣ୍ଣଭାବରେ—Completely; in full measure. ଦେ. ଅ—ସେ ପ୍ରକାରେ—In that manner.

ସେରଡ଼ା—ଦେ. ବି—ଚିଲିକାହ୍ରଦର ଏକପ୍ରକାର ଲୁଣି ମାଛ—
Serardā A species of salt water fish (found in the Chilka lake).

ସେର(ରେ)ଣା—ଦେ. ବି ( ସଂ ଶରଣା )—ଶାରଣା ମାଛ—
Sera(re)nā Barbus Sarana ( fish ).
সরলপুঁটী शरना [ଦ୍ର—ଏହା ଚେଲ୍ଲ କେଉଣ୍ଡିର ଅନୁରୂପ, କିନ୍ତୁ ଚେଲ୍ଲ କେଉଣ୍ଡିଠାରୁ ପତଳା; ଏହା ମଧୁର ଜଳରେ ବାସ କରେ ଓ ୧୧ ଇଞ୍ଚ ପର୍ଯ୍ୟନ୍ତ ବଢ଼େ ।]

ସେରନ୍ତା—ଦେ. ବିଣ. ପୁଂ ଓ ସ୍ତ୍ରୀ [ସଂ. ସ୍ନେହ; ସ୍ନେହବର୍ଦ୍ଧିତ)—ଗେହ୍ଲା, ଅତ୍ୟଧିକ ଆଦରରେ ଲାଳିତପାଳିତ ( ସନ୍ତାନ )—
Serantā Much fondled (child). [ଉ—
ସେରନ୍ତୀ }—ସ୍ତ୍ରୀଲିଙ୍ଗର ଅନ୍ୟରୂପ
ସେରନ୍ତେଇ
আদুরে दुलार(रा) ସେରନ୍ତା ହୋଇ କି ଘର କରିବେ ?—ପ୍ରାଚୀ ଇତିହାସମଞ୍ଜରୀ ।]

ସେରନ୍ତେଇ ହେବା—ଦେ. କ୍ରି—ଅତ୍ୟଧିକ ସ୍ନେହ ପାଇବାର ଲକ୍ଷଣ
Serantei hebā ପ୍ରକାଶ କରିବା—To make a show
আদর দেখান दुलारपन दिखलाना of one's being fondled.

(ତାର)ସେର ପୂରିଲା—ଦେ. ବାକ୍ୟ—ବିଧିନିର୍ଦ୍ଧାରିତ ଆୟୁଷ୍କାଳ ଶେଷ
Sera pūrilā ହେଲା; ମରଣ ସମୟ ଉପସ୍ଥିତ ହେଲା—
পবমাই ফুবাল आयु शेषहुआ The appointed time (of death) is come; one's preordained time of dissolution is at hand. [ଉ—ଦେଖୁ ଦେଖୁ ସେର ପୁରିଲା । ଦୁର୍ଲଭ ମାନବ ଜନ୍ମ ବୃଥା ସରିଲା—ଶାଳମଣି ମିଶ୍ର, ଅସ୍ମ-ନିବେଦନ ।]

ସେର ବସିବା—ପ୍ରାଦେ ( ଯାଜପୁର ) ବି—ମାଣବସା; ସେର ( ଦେଖ)
Sera basibā Sera ( See )

ସେରସ୍ତା (ଇତ୍ୟାଦି)—ବୈଦେ. ବି—ସିରସ୍ତା ଇତ୍ୟାଦି (ଦେଖ)
Serastā (etc) Sirastā etc (See)

ସେରା—ପ୍ରାଦେ. ( ସମ୍ବଲପୁର ଓ ଗଡ଼ଜାତ ) ବିଣ—ସେହିଗୁଡ଼ିକ—
Serā Those. ପ୍ରାଦେ ( ସିଂହଭୂମି ) ବି—୨୫ ଠାରୁ ୩୦ ତୋଳା ଓଜନ—A standard weight of 25 to 30 Tolās.

ସେରାଳ—ସଂ ବି—ଫିକା ହଳଦିଆ ବର୍ଣ୍ଣ ( ହ. ଶ )—Faint yel-
Serāla low colour. ସଂ ବିଣ—ଫିକା ହଳଦିଆ (ହ. ଶ) —Faint yellow; yellowish.

ସେରାହ—ସଂ. ବି—ଦୁଧ ପରି ଧଳା ଘୋଡ଼ା ( ହ. ଶ )—
Serāha Milk-white horse.

ସେରିଫ୍—ବୈଦେ. ବି ( ଇଂ )—କଲିକତା ଅବ ରାଜଧାନୀରେ ମୁଖ୍ୟ
Seriph ମିଜ୍‌ଷ୍ଟ୍ରେଟଙ୍କର ଦେଓୟାନୀ—Sheriff.
সেরিফ शेरिफ

ସେରୁ—ସଂ. ବିଣ—ବନ୍ଧନକାରୀ ( ହ. ଶ )—
Seru Binding.

ସେରୁରାହ—ସଂ.ବି—ଯେଉଁ ଧଳା ଘୋଡ଼ାର ମୁଣ୍ଡରେ ଦାଗ ଥାଏ (ହ.ଶ)
Serurāha —A white horse having a mark on the head.

ସେରେ—ଦେ. ବି ଓ ବିଣ—ଏକସେର ପରିମାଣ—One seer.
Sere একসের एकसेर

ସେର୍ଣ୍ଣା(ର୍ନା)—ପ୍ରାଦେ ( ସମ୍ବଲପୁର ) ବି—ସେରଣା ( ଦେଖ )
Sernnā(rnā) Seranā ( See )

ସେଲ୍—ବୈଦେ. ବି ( ଇଂ )—୧ । ବିକ୍ରି—1. Sale. ୨ । ଅଦାଲତ ଆଦେଶରେ କରାଯିବା ଡାକ ନିଲାମ—2. Auction sale. ୩ । ଗୋଳା ମାରିବାର ଅସ୍ତ୍ର ପୂର୍ଣ୍ଣ ବାରୁଦ ଗୁଳା—3. Shell ( of a cannon ). ୪ । ଜେଲ୍‌ଖାନାରେ ଜଣେ ମାତ୍ର କଏଦୀକୁ ବନ୍ଦ କରି ରଖାଯିବା ପାଇଁ ନିର୍ଦ୍ଦିଷ୍ଟ ସ୍ୱତନ୍ତ୍ର କୋଠରି—4. Cell or small room for one person in a Jail
Sel সেল सेल

ସେଲ୍ ଖତମ୍ କରିବା—ଦେ. କି ( କଚେରୀ ) ( ଇଂ. ସେଲ୍ ଓ ପା. ଖତମ୍ )—ପ୍ରକାଶ୍ୟ ଡାକ ନିଲାମରେ ସର୍ବୋଚ୍ଚ ଡାକକୁ ଗ୍ରହଣ କରି ସର୍ବୋଚ୍ଚ ଡାକକାରୀ ବ୍ୟକ୍ତିଙ୍କ ନାମ ଘୋଷଣା କରିବା—To conclude an auction sale by proclaiming the name and call of the highest bidder.
Sel khatam karibā সেল খতম করা सेल खतम करना

ସେଲ୍ ଡେଟ୍—ବୈଦେ. ବି ( କଚେରୀ ) ( ଇଂ )—ଅଦାଲତ ଆଦେଶରେ ସମ୍ପତ୍ତିର ପ୍ରକାଶ୍ୟ ନିଲାମ କରାଯିବା ପାଇଁ ପୂର୍ବରୁ ନିର୍ଦ୍ଧାରିତ ଓ ଘୋଷିତ ଦିବସ—Sale date. ( ସେଲ୍ ତାରିଖ[ଖ]—ଅନ୍ୟରୂପ )
Sel det সেল্ ডেট सेल डेट

ସେଲ୍ ପ୍ରୋକ୍ଲାମେସନ୍—ବୈଦେ. ବି ( କଚେରୀ ) ( ଇଂ )—କୌଣସି ସମ୍ପତ୍ତିର ନିଲାମ ହେବା ପାଇଁ ପୂର୍ବରୁ ପ୍ରକାଶିତ ସରକାରୀ ଆଦେଶପତ୍ର ବା ନିଲାମ ଇସ୍ତାହାର—Sale proclamation.
Sel proklāmesan সেল প্রোক্লামেসন सेल प्रोक्लामेसन

ସେଲ୍ ଫରଦ୍—ବୈଦେ. ବି (କଚେରୀ) (ଇଂ ସେଲ୍ ଓ ପା. ଫର୍ଦ)—କୌଣସି ସମ୍ପତ୍ତିର ଅଦାଲତ ଆଦେଶରେ ପ୍ରକାଶ୍ୟ ନିଲାମ କରାଯିବା ସମୟରେ ନିଲାମ କବ କବ ଡାକିଲେ ଓ କେତେ କେତେ ମୂଲ୍ୟରେ ଡାକିଲେ ଏହା ନିଲାମ କରିବା ହାକମ ଯେଉଁ କାଗଜରେ ଲେଖନ୍ତି—Sale sheet. ( ସେଲ୍ ଫର୍ଦ—ଅନ୍ୟରୂପ ) ( ସେଲ୍ ସିଟ୍—ଇଂ. ରୂପ )
Sel pharad সেল ফর্দ सेल फर्द

ସେଲ୍ ରଦ୍(ଦ୍)—ବୈଦେ. ବି ( କଚେରୀ ) ( ଇଂ. ସେଲ୍ ଓ ପା. ରଦ୍ )—ସମ୍ପତ୍ତିର ନିଲାମ ହେବା ପରେ କୌଣସି ହାକମଙ୍କ ଦ୍ୱାରା ଅନ୍ୟାୟ କାରଣରୁ ଉକ୍ତ ନିଲାମର ଖଣ୍ଡନ—The setting aside of a sale; annulment of a sale.
Sel rad(dd) সেল্ রদ্ सेल रद्द

ସେଲ୍ ଲିଷ୍ଟ(ଷ୍ଟି)—ବୈଦେ. ବି ( କଚେରୀ ) ( ଇଂ )—ନିଲାମ ହୋଇଥିବା ବା ନିଲାମରେ ଉଠିଥିବା ସମ୍ପତ୍ତି-ମାନଙ୍କର ତାଲିକା—Sale list.
Sel lisht(shti) সেল লিষ্ট सेल लिस्ट

ସେ ଲଗେ—ପ୍ରାଦେ (ବାଲେଶ୍ୱର ପାଠଣା) ଅ—ସେହି ସ୍ଥାନରେ—In that place; there.
Se lage

ସେଲମ୍—ଦେ. ବି ( ସ. ଚେଲମ୍ )—ଦାକ୍ଷିଣାତ୍ୟରେ ନିର୍ମିତ ଉତ୍କୃଷ୍ଟ ସୂକ୍ଷ୍ମ କାର୍ପାସ ବସ୍ତ୍ର—A fine kind of cotton cloth woven in South India.
Selam সেলম चेलम

ସେଲା—ପ୍ରାଦେ. ( ଲଡ଼ିଆ ) ସର୍ବ—ସେହିଠା—That.
Selā

ସେଲାଇ ( ଇତ୍ୟାଦି )—ଦେ. ବି [ ବଙ୍ଗଳା ଉଚ୍ଚାରଣରୁ ଅନୁକୃତ]—ସିଲାଇ ଇତ୍ୟାଦି ( ଦେଖ )—Silāi etc ( See )
Selāi ( etc )

ସେ ଲାଗି—ଦେ. ଅ—ସେଥିପାଇଁ; ସେଥିଯୋଗୁଁ—For that; owing to that.
Se lāgi সেইজন্য उसकेलिए

ସେ ଲାଗେ—ଦେ. ଅ—(ସଂ ତଦ୍ ଲଗେ)—ସେଇଲଗେ,ତତ୍‌କ୍ଷଣାତ୍—Immediately; at once; in that very moment.
Se lāge তখনি उस समय

ସେଲା ବର୍‌ଦାର୍—ବୈଦେ. ବି (ପା. ସିଲହ୍=ଅସ୍ତ୍ର+ବର୍‌ଦାର୍=ଧାରୀ )—ଅସ୍ତ୍ରଧାରକ ସିପାହୀ—A soldier or peon armed with weapons.
Selā bar-dār সেলাবরদার্ शेलाबरदार

ସେଲାମ୍ (ଇତ୍ୟାଦି)—ବୈଦେ. ବି (ବଙ୍ଗଳା ଉଚ୍ଚାରଣର ଅନୁକରଣ)—ସଲାମ୍ ଇତ୍ୟାଦି ( ଦେଖ )—Salām etc ( See )
Selām ( etc )

ସେଲାମତ୍—ବୈଦେ. ବି ( ବଙ୍ଗଳା ଉଚ୍ଚାରଣର ଅନୁକରଣ )—ସଲାମତ ( ଦେଖ )—Salāmat ( See )
Selāmat

ସେଲାମି—ବୈଦେ. ବିଣ ଓ ବି ( ବଙ୍ଗଳା ଉଚ୍ଚାରଣର ଅନୁକରଣ )—ସଲାମି ( ଦେଖ )—Salāmi ( See )
Selāmi

ସେଲି—ଦେ. ବି [ ସଂ. ଚେଳ ]—ସୂକ୍ଷ୍ମ ବସ୍ତ୍ର ବା ପୋଷାକବିଶେଷ—A sort of fine cloth or dress. [ ଦ୍ର—ସିପାହୀ ବେଶ ସେଲି ଅଙ୍ଗେ ବେଢ଼େ ଉର—କୃଷ୍ଣସିଂହ. ମହାଭାରତ. ଆଦି ।] ବୈଦେ. ବି [ଇଂ. ନାମ] —ଇଂଲଣ୍ଡର ଜଣେ ପ୍ରଧାନ ସ୍ୱର୍ଗତ କବି—Shelley; a late famous poet of England.
Seli সেলি शेलि

ସେଲିବିସ୍—ବୈଦେ. ବି ( ନାମ )—ଭାରତୀୟ ଦ୍ୱୀପପୁଞ୍ଜର ଅନ୍ତର୍ଗତ ଓ ବୋର୍ଣ୍ଣିଓ ଦ୍ୱୀପର ପୂର୍ବରେ ଅବସ୍ଥିତ ଦ୍ୱୀପ ଓ ସମୁଦ୍ର—Celebes (island and sea) in the Indian archipelago. [ଦ୍ର—ଏହି ଦ୍ୱୀପର ଚତୁର୍ଦ୍ଦିଗରେ ଥିବା ଉପସାଗରକୁ ସେଲିବିସ୍ ଉପସାଗର ବୋଲାଯାଏ ।]
Selibis সেলিবিস্ सेलिबिस

ସେଲିମ୍—ବୈଦେ. ବି (ପା. ନାମ)—୧ । ସେରସାହାଙ୍କ ଦ୍ୱିତୀୟ ପୁତ୍ର-
Selim 1. The second son of Sher Saha who

ସେଲିମ reigned at Delhi for 9 years till 1554.
सलीम [ଦ୍ର—ଏ ଧର୍ମରେ ଖ୍ରୀ. ୧୫୪୫ ରୁ ୧୫୫୪ ପର୍ଯ୍ୟନ୍ତ ଭାରତ ସମ୍ରାଟ୍ ହୋଇ ସ୍ୱନାମରେ ରାଜ୍ୟ ଶାସନ କରିଥିଲେ ।]
୨ । ମୋଗଲ ସମ୍ରାଟ୍ ଆକବରଙ୍କ ଜ୍ୟେଷ୍ଠ ପୁତ୍ରଙ୍କର ପ୍ରଥମ ନାମ—2. The first name of Emperor Jahangir. [ଦ୍ର—ଆକବରଙ୍କ ମୃତ୍ୟୁପରେ ୧୬୦୫ ସାଲରେ ଏ 'ଜାହାଙ୍ଗୀର୍' ନାମ ଗ୍ରହଣ ପୂର୍ବକ ଭାରତ ସମ୍ରାଟ୍ ହୋଇଥିଲେ ।]

ସେଲୁ(ଲ୍ୟୁ)କସ୍—ବୈଦେ. ବ (ନାମ)—ଭାରତବିଜୟୀ ମହାବୀର Selu(lyu)kas ସିକନ୍ଦରଙ୍କ ସେନାପତି—Nikator Seleucus; the name of a general of Alexander the Great who formed alliance with Chandragupta and ceded to him the Provinces west of the Indus, conquered by the Greeks.
ସେଲୁକସ୍
सेलूकस्
[ଦ୍ର—ଏ ସିକନ୍ଦରଙ୍କ ମୃତ୍ୟୁ ପରେ ଖ୍ରୀଷ୍ଟପୂର୍ବ ୩୨୩ ଅବ୍ଦରେ ସିକନ୍ଦରଙ୍କ ବିଜିତ ଭାରତବର୍ଷର ରାଜା ହେଲେ ହେଲେ ଏବଂ ଭାରତ ଆକ୍ରମଣରେ ଅକୃତକାର୍ଯ୍ୟ ହୋଇ ଚନ୍ଦ୍ରଗୁପ୍ତଙ୍କ ସହିତ ସନ୍ଧି ସ୍ଥାପନ କଲେ । ଏ ସିନ୍ଧୁ ନଦୀର ପଶ୍ଚିମରେ ଥିବା ଗ୍ରୀକ୍ ଅଧିକୃତ ପ୍ରଦେଶମାନଙ୍କୁ ଚନ୍ଦ୍ରଗୁପ୍ତଙ୍କୁ ଛାଡି ଦେଇ ତତ୍‌ପରିବର୍ତ୍ତେ ଚନ୍ଦ୍ରଗୁପ୍ତଙ୍କଠାରୁ ଖ୍ରୀଷ୍ଟପୂର୍ବ ୩୧୨ ରେ ୫୦୦ ଗୋଟି ହାତୀ ଗ୍ରହଣ କରିଥିଲେ ।]

ସେ(ସା)ଲୁନ୍—ବୈଦେ. ବ (ଇଂ ଓ ଫ୍ରେଞ୍ଚ୍)—ଜାହାଜରେ ଏବଂ Se(sā)lun ରେଲରେ ଉଚ୍ଚ ଶ୍ରେଣୀର ଯାତ୍ରୀମାନଙ୍କ ବ୍ୟବହାର ନିମନ୍ତେ ସୁସଜ୍ଜିତ କୋଠରୀ—Saloon in a ship or railway train.
ସେଲୁନ୍
सेलून

ସେଲେଖାନା—ବୈଦେ. ବ (ଫା. ସିଲହ୍ + ଖାନା)—ଅସ୍ତ୍ରାଗାର—
Selekhanā Arsenal; armoury.
ସେଲଖାନା सेलखाना

ସେଲେଟ୍ (ଇତ୍ୟାଦି)—ବୈଦେ. ବ—ସିଲଟ୍ ଇତ୍ୟାଦି (ଦେଖ)
Selet (etc) Silat etc. (See)

ସେଲ୍ଫ୍ ଷ୍ଟାର୍ଟର୍—ବୈଦେ. ବ (ଇଂ)—ମଟର ଗାଡ଼ିବିଶେଷ (ଯହିଁରେ Selph stārtar ଡ୍ରାଇଭର୍ ତାଙ୍କ ଆସନରେ ବସି ସୁଇଚ୍‌କୁ ମୋଡ଼ି ଦେଲେ ସେ ଗାଡ଼ି ଗତି କରେ)—A self-starter motor car.
ସେଲ୍ଫ ଷ୍ଟାର୍ଟାର
सेल्फ स्टार्टर

ସେସ୍—ବୈଦେ. ବ (ଇଂ)—ଶୁଳ୍କ; ରାଜସ୍ୱ କର—Cess. [ଦ୍ର—
Ses ଗଭର୍ଣ୍ଣମେଣ୍ଟଙ୍କୁ ବା ରାଜାଙ୍କୁ ଦେୟ ଜମିର ଖଜଣା ବା
ସେସ୍ ରାଜସ୍ୱ ଛଡ଼ା ବିଶିଷ୍ଟ ସାଧାରଣ କାର୍ଯ୍ୟ ନିର୍ବାହାର୍ଥ (ଯଥା—
सेस् ଶିକ୍ଷା, ରାସ୍ତା, ଡାକ, ପୁଷ୍କରିଣୀ ଆଦି କାମ ପାଇଁ) ଭୂମ୍ୟଧିକାରୀ ଓ ପ୍ରଜାମାନଙ୍କଠାରୁ ଯେଉଁ ଶୁଳ୍କ ଗଭର୍ଣ୍ଣମେଣ୍ଟ ବା ରାଜା ଆଦାୟ କରନ୍ତି ତାକୁ ସେସ୍ ବୋଲାଯାଏ ଇଷ୍ଟାମରେ ଏହାକୁ ସିସ୍ତ କହନ୍ତି ।]

ସେସ୍ ପିଟ୍—ବୈଦେ. ବ (ଇଂ)—ଘର, ଗଳି ଓ ପାଇଖାନାରୁ ବୋହି-
Ses pit ଯିବା ମଇଳା ପାଣି ଜମା ହେବାପାଇଁ ନିର୍ମିତ ଗର୍ତ୍ତ (ସେସ୍ ପୁଲ୍—ଅନ୍ୟରୂପ) କୁଣ୍ଡ—Cesspit; cesspool.
ସେସ୍ ପିଟ୍ [ଦ୍ର—ଏଥିର ପରିଷ୍କାର ପାଇଁ ଗୃହ ସ୍ୱାମୀ ମିଉନିସି-
सेसपीट ପାଲିଟିକୁ ଅଧିକା ସେସ୍ ଦିଅନ୍ତି ।]

ସେଶନ୍—ବୈଦେ. ବ (ଇଂ)—୧ । ସେଶନ୍ସ୍ (ଦେଖ)
Seśan 1. Seśans (See)
ସେସନ୍ ୨ । ବିଦ୍ୟାଳୟର ପାଠବର୍ଷ—2. The session
सेशन of a school. ୩ । ଲାଟ ସଭା ଆଦିର ବୈଠକ—3 Session of a Legislative Council.
[ଦ୍ର—ନ୍ୟାୟାଳୟ, ପାର୍ଲିଆମେଣ୍ଟ, ବ୍ୟବସ୍ଥାପକ ସଭା ଆଦିରେ ଏକାଦିକ୍ରମେ କିଛିଦିନ କାଳ ଧରେ ଅଧିବେଶନ ଚାଲିଲେ ଉକ୍ତ ଅଧିବେଶନକୁ ସେସନ୍ ବୋଲାଯାଏ ।]

ସେଶନ୍ସ୍—ବୈଦେ. ବ (ଇଂ)—ଗୁରୁତର ଫଉଜଦାରୀ ମାମଲା (ଯଥା—
Seśans ନରହତ୍ୟା, ଗୁରୁତର ଆଘାତ, ଡକାଏତି)ମାନଙ୍କ ବିଚାର (ସେଶିଅନ୍—ଗଞ୍ଜାମୀ ରୂପ) କରିବା ପାଇଁ ପ୍ରତିଷ୍ଠିତ ଅଦାଲତ; ଦଉରା—Sessions. [ଦ୍ର—ଏ ଅଦାଲତରେ ଜଜଙ୍କ
ସେସନ୍ସ୍
सेशन्स सହିତ ମନୋନୀତ କେତେ ଜଣ ଜୁରୀ ବା ଅସେସର୍ ବସି ମକଦ୍ଦମାମାନଙ୍କ ବିଚାର କରନ୍ତି ।]

ସେସନ୍ସ୍(ନ୍) କେସ୍—ବୈଦେ. ବ (ଇଂ) (କଚେରୀ)—ସେଶନ୍ସ ମକଦ୍ଦମା
Seśans(n) kes (ଦେଖ)—Seśans makadamā (See)

ସେଶନ୍ସ୍(ନ୍) କୋର୍ଟ୍—ବୈଦେ. ବ—ସେଶନ୍ସ୍‌ରେ ବିଚାର୍ଯ୍ୟ ମକଦ୍ଦମ
Seśans(n) kort(rt) ବିଚାର କରିବାକୁ ଭାରପ୍ରାପ୍ତ ଅଦାଲତ ବା (ସେଶନ୍ସ ଅଦାଲତ—ଅନ୍ୟରୂପ) କଚେରୀ—Sessions court.
ସେସନ୍ସ୍ କୋର୍ଟ୍ court of sessions.
सेशन्स कोर्ट

ସେଶନ୍ସ୍(ନ୍) ଜଜ୍—ବୈଦେ. ବ (ଇଂ)—ଜିଲ୍ଲାର ସର୍ବ ପ୍ରଧାନ
Seśans(n) jaj ଫଉଜଦାରୀ ବିଚାରପତି—Sessions Judge;
ସେସନ ଜଜ୍ [ଦ୍ର—ସାଧାରଣତଃ ଫଉଜଦାରୀ ମୋକଦ୍ଦମାକୁ
सेशन जज ମାଜିଷ୍ଟ୍ରେଟ ବିଚାର କରନ୍ତି ଓ ଉକ୍ତ ମାଜିଷ୍ଟ୍ରେଟମାନଙ୍କ (ସେଶିଅନ ଜଜ—ଗଞ୍ଜାମୀ ରୂପ) ବିଚାର ବିରୁଦ୍ଧରେ ସେଶନ୍ସ ଜଜଙ୍କ ନିକଟରେ ଅପୀଲ୍ ହୁଏ । ଗୁରୁତର ଫଉଜଦାରୀ ମକଦ୍ଦମା (ଯଥା—ନରହତ୍ୟା, ଡକାୟତି, ଗର୍ଭପାତ, ଘର ପୋଡ଼ା, ଡକାଇତି)ମାନଙ୍କରେ ମାଜିଷ୍ଟ୍ରେଟମାନେ ପ୍ରଥମେ ଅନୁପୂର୍ବିକ ତଦନ୍ତ କଲା ପରେ ଅପରାଧୀକୁ ସେଶନ୍ସ୍ କୋର୍ଟକୁ ବିଚାର ନିମନ୍ତେ ପଠାନ୍ତି । ସେସନ୍ ଜଜଙ୍କ ସଙ୍ଗେ ସର୍ବସାଧାରଣଙ୍କ ମଧ୍ୟରୁ ମନୋନୀତ ଏକାଧିକ ବ୍ୟକ୍ତି (ଜୁରୀ ବା ଅସେସର୍) ବସି ସେଶନ୍ ମକଦ୍ଦମା ବିଚାର କରନ୍ତି । ଓଡ଼ିଶାରେ ଯେଉଁ ଯେଉଁ ଜିଲ୍ଲାରେ ସେଶନ୍ ମକଦ୍ଦମାମାନ ଘଟେ, ସେସନ୍ ଜଜ୍ ସେହି ସେହି ଜିଲ୍ଲାର ସଦରଠାକୁ ଯାଇ ସେଠାରେ ବୈଠକ କରି ଉକ୍ତ ମକଦ୍ଦମାମାନ ବିଚାର କରନ୍ତି ।]

ସେସନ୍ସ୍(ନ୍) ବିଚାର—ଦେ. ବ—ସର୍ବସାଧାରଣଙ୍କ ମଧ୍ୟରୁ ମନୋନୀତ
Seśans(n) bichāra ଏକାଧିକ (୨ ଠାରୁ ୧୨ ସଂଖ୍ୟକ)

ସେସନ୍ସ ବିଚାର ବ୍ୟକ୍ତିଙ୍କ ସଙ୍ଗେ ସେସନ୍ ଜଜ୍‌ଙ୍କଦ୍ୱାରା ଗୁରୁତର
सेशन बिचार ଫଉଜଦାରୀ ମକଦମାର ବିଚାର—Sessions
trial.

ସେସନ୍ସ(ନ୍) ମକଦ(ଦ୍ଦ)ମା—ବୈଦେ. ବି—ସେସନ୍ ଅଦାଲତର ବିଚାର୍ଯ୍ୟ
Sesans(n) makada(dda)mā ଗୁରୁତର ଫଉଜଦାରୀ ମକଦମା
সেসন্স মকদ্দমা —Serious criminal cases triable
सेशन मुकदमा by the sessions court.

ସେସନ୍ସ(ନ୍) ସୁପରଦ—ବୈଦେ. ବି (କଚେରୀଆ)—ଦାନ୍ଗ୍ରା ସୁପର୍ଦ;
Sesans(n) suprada ଗୁରୁତର ଫଉଜଦାରୀ ମକଦମାମାନଙ୍କର
ସେସନ୍ସ(ନ୍) ସୁ(ସୋ)ପର୍ଦ୍ଦ } —ଅନ୍ୟରୂପ ପ୍ରଥମେ ମାଜିଷ୍ଟ୍ରେଟ୍‌ଙ୍କ ଦ୍ୱାରା
ସେସନ୍ସ(ନ୍) ସମର୍ପଣ ତଦନ୍ତ ହେବା ପରେ
সেসন্স সোপর্দ অসামী অপরাধ କରିଥିବାର ସମ୍ଭାବନା ଦେଖାଗଲେ
सेशन सपुर्द उକ୍ତ ମକଦମାର ଶେଷ ବିଚାର ପାଇଁ ମାଜିଷ୍ଟ୍ରେଟଙ୍କ ଦ୍ୱାରା
ଉକ୍ତ ଆସାମୀଙ୍କୁ ସେସନ୍ ଜଜ୍‌ଙ୍କ କୋର୍ଟକୁ ପ୍ରେରଣ—
Commitment of an accused to the
sessions after preliminary enquiry by
a magistrate.

ସେ ସରି—ଦେ. ଅ—୧ । ସେ ପର୍ଯ୍ୟନ୍ତ—
Sesari সেপর্য্যন্ত वहाँतक 1. Till then.
( ସେ ସରକ—ଅନ୍ୟରୂପ ) ୨ । ସେ ଅବସ୍ଥା—2. That
condition.

ସେହା (ଇତ୍ୟାଦି)—ବୈଦେ. ବି—(ବଙ୍ଗଳା ଉଚ୍ଚାରଣର ଅନୁକରଣ)—
Seha (etc) ସିହା ଇତ୍ୟାଦି (ଦେଖ)—Sihā etc (See)

ସେହି—ଦେ. ସର୍ବ (ସଂ. ତଦ୍ ଶବ୍ଦଜ 'ସଃ')—ସେ (ସ୍ତ୍ରୀ. ପୁ. ଓ
Sehi କ୍ଳୀବ)—He, she or it. [ ଉ—ଗୁରୁଙ୍କଠାରେ ଭକ୍ତି
সে କରିଥାନ୍ତି ସେହି । କୃଷ୍ଣସିଂହ. ମହାଭାରତ. ଅଦି ।] ୨ ।
वह (ସଂ. ତଦ୍ଧି) ନିର୍ଦ୍ଦିଷ୍ଟ ବସ୍ତୁ ବା ବ୍ୟକ୍ତି; ସେ ଏକା; ନିଶ୍ଚୟ ସେ
তাহা ବା ତାହା—2. That only; certainly he, she
वही or it; a certain person or thing. ୩ । ଅନୁପସ୍ଥିତ
ବ୍ୟକ୍ତି ବା ବସ୍ତୁ—3. That person or thing
କାଳି ବୈଦେ. ବି (ଫା. ସିହାଇ)—ସିହାଇ; ମସୀ; କାଳି—
स्याही Ink.

ସେହି (ଇତ୍ୟାଦି)—ଦେ. ସର୍ବନାମ—ସେଇ ଇତ୍ୟାଦି (ଦେଖ)
Sehi (etc) Sei etc (See)

ସେହି ଖନ—ପ୍ରାଦେ. (ଉତ୍ତର) କ୍ରି. ବିଣ—ସେହିକ୍ଷଣି—
Sehi khan At that moment; immediately;
ସେହି କ୍ଷ(ଖି,ଛ କ୍ଷ)ଣି ସେହି ଖ (ଖି ଛ କ୍ଷ)ଣିକା ଦେ ରୂପ at once.

ସେହି ସଜରେ—ଦେ. କ୍ରି. ବିଣ—୧ । ତତ୍କ୍ଷଣାତ୍—1. At once;
Sehi sajare suddenly. [ ଉ—ଏହା କହି ସେହି
तभी ସଜରେ ପାଣ୍ଡୁସୁତେ । ଧାଇଁଲେ କପିଧ୍ୱଜ ଯହିଁ
उसी हालतमें ଥିବା ପଥେ—କୃଷ୍ଣସିଂହ. ମହାଭାରତ. ବନ ।]
୨ । ଅଲକ୍ଷିତ ପ୍ରଣାଳୀରେ—2. In a secret
manner. [ ଉ—ଭଡାଇ ସେହି ସଜରେ । ଥାଣି
ଭଣିଲେ ...—...ଙ୍କ ପଦୀ । ]

ସେହୁ—ଦେ. ସର୍ବ (ପଦ୍ୟ) ପୁଂ ଓ ସ୍ତ୍ରୀ (ସଂ. ସଃ+ହି; ପ୍ରା. ସୋହି)—
Sehu ନିର୍ଦ୍ଦିଷ୍ଟ ବ୍ୟକ୍ତି—A certain person. [ ଉ—
সেই ତାହାଙ୍କୁ ସେହୁ ସେବା କଲେ ଅହର୍ନିଶ—କୃଷ୍ଣସିଂହ,
वही ମହାଭାରତ. ଅଦି । ]

ସେହୁଣ୍ଡ—ସଂ. ବି—ପତ୍ରର ସିଜୁ; ମନସା ସିଜୁ—Uphorbia Nerifolia
Sehunda [ ଦ୍ର—ଏହା କଟୁରସ,
ଅନ୍ୟ ସ—ସିଂହତୁଣ୍ଡ, ଗୁରୁପାକ, ତୀକ୍ଷ୍ଣ, ବିରେଚକ, ଅଗ୍ନି-
ବଜ୍ରୀ, ବଜ୍ରଦ୍ରୁମ, ସୁଧା, ବର୍ଦ୍ଧକ ଏବଂ କଫ, ବାୟୁ, ଆମଦୋଷ,
ସମନ୍ତଦୁଗ୍ଧା, ସ୍ନୁକ, ସ୍ନୁହୀ, ଶୂଳ, ଉଦରଗ୍ରନ୍ଥି, ଉଦର ରୋଗ,
ଗୁଡ଼ା । ଗୁଲ୍ମ, ଅଷ୍ଠୀଲା, ପ୍ଳୀହା, ଯକୃତ୍, ଜ୍ୱର,
मनसा सीज ପାଣ୍ଡୁ, ଶୋଥ, ଅର୍ଶ, କୁଷ୍ଠ, ଉନ୍ମାଦ
सेहुवड, थुहर, सिज କ୍ରିମି, ମେହ, ଅଶ୍ମରୀ, ମେଦୋ ଦୋଷ
ଅ. ନଭୁମ୍ ଓ ବିଷଦୋଷର ଶାନ୍ତିକାରକ ।
ଏହାର ପତ୍ରର ରସ ବାହ୍ୟ ପ୍ରୟୋଗରେ ଶୋଥରେ ବିଶେଷ ଉପକାରୀ ।
ଏ ଗଛର କ୍ଷୀର ( ଅଠା ) କଟୁରସ, ଉଷ୍ଣବୀର୍ଯ୍ୟ, ଲଘୁପାକ, ସ୍ନିଗ୍ଧ ଏବଂ ଗୁଲ୍ମ, କୁଷ୍ଠ ଓ ଉଦର ରୋଗରେ
ଉପକାରକ । ]

ସେହୁଲ—ପ୍ରାଦେ ( ସମ୍ବଲପୁର ) ବି—ସେଉଲ ମାଛ—
Sehula Ophiceplasus Striatus fish.

ସେ ହେଲା—ପ୍ରାଦେ ( ଉତ୍ତର ) ସର୍ବ—ସେହିଟା—
Se helā That.

ସେହ୍ନା—ଦେ. ବି (ସଂ. ସନ୍ନାହ)—୧ । କବଚ; ସାଞ୍ଜୁ—1. Armour;
Sehnā coat of mail. [ ଉ—ବନ୍ଦୀଙ୍କ ବଳ ସେହ୍ନା ଅଙ୍ଗେ,
সাঁজোয়া सनाह ଦେଖି ଧାଇଁଲେ ଅତି ବେଗେ । ଜଗନ୍ନାଥ. ଭାଗବତ ]
স্নেহ स्नेह ୨ । ( ସଂ. ସ୍ନେହ ) ସ୍ନେହ—2. Affection.
সহায় सहाय ୩ । ସହାୟ—3. Help. [ ଉ—କାହିଁ କେତେ
ନୋହୁଛି ସେହ୍ନା—ଗୋପାଳକୃଷ୍ଣ. ପଦକଲ୍ଲୋଳ । ]
ବିଣ—ସ୍ନେହୀ—Loving; affectionate.

ସୈ—ବୈଦେ. ବି ( ଫା )—ସହି ( ଦେଖ )
Sai Sahi ( See )

ସୈଂ(ସୈଁ)ତିରିଶ(ଶି)—ଦେ. ବି ଓ ବିଣ ( ସଂଖ୍ୟାବାଚକ ) ( ସଂ. ସପ୍ତ-
Saim(saiñ)tirisa(Si) ତ୍ରିଂଶତ୍; ପାଲି—ସତ୍ତତିଂସତି, ପ୍ରା.
সাঁয়ত্রিশ ସତ୍ତିସଇ )—ତିରିଶଠାରୁ ସାତ ଅଧିକ—
सैंतीस ·Thirty seven.
( ସୈଂ[ସୈଁ]ତି[ତି]ଶ[ଶି]—ଅନ୍ୟରୂପ )

ସୈଂ(ସୈଁ)ତିରିଶାଶଏ(ହେ)—ଦେ. ବି ଓ ବିଣ ( ସଂଖ୍ୟାବାଚକ )
Saim(saiñ)tirisāsae(he) ( ସଂ. ସପ୍ତତ୍ରିଂଶତ୍+ଶତ )—
একশ সাঁইত্রিশ ଏକଶତ ସୈଂତିରିଶ—One hundred and
एकसौ सैंतीस thirty seven.
[ ସୈଂ(ସୈଁ)ତି(ତି)ଶାଶଏ(ହେ)—ଅନ୍ୟରୂପ ]

ସୈଂଦୁର—ସଂ. ବିଣ—ସୈନ୍ଦୁର ( ଦେଖ )
Saimdura Saindūra ( See )

ସୈଂଧବ (ଇତ୍ୟାଦ)—ସଂ. ବ ଓ ବଣ—ସୈନ୍ଧବ ଇତ୍ୟାଦ (ଦେଖ)
Saimdhaba ( etc ) Saindhaba etc (See)

ସୈଂହ—ସଂ. ବଣ ( ସିଂହ+ସମ୍ବନ୍ଧାର୍ଥେ ଅ )—୧ । ସିଂହସମ୍ବନ୍ଧୀୟ—
Saimha 1. Leonine; relating to lion. ୨ । ସିଂହ ସଦୃଶ—2. Similar to a lion.

ସୈଂହଳ—ସଂ. ବଣ (ସିଂହଳ+ସମ୍ବନ୍ଧାର୍ଥେ ଅ)—୧ । ସିଂହଳଦ୍ୱୀପ
Saimhala ସମ୍ବନ୍ଧୀୟ—1. Ceylonese. ୨ । ସିଂହଳ-
(ସୈଂହଳୀ—ସ୍ତ୍ରୀ) ଦ୍ୱୀପଜାତ—2. Produced in Ceylon.

ସୈଂହଳୀ ପିପ୍ପଳୀ—ସଂ. ବ—ଏକପ୍ରକାର ପିପ୍ପଳୀ—A kind of long
Saimhalī pippalī pepper. [ ଦ୍ର—ବୈଦ୍ୟର ଅନ୍ୟ ନ—ସୈଂହଳୀ, ସର୍ପଦଣ୍ଡୀ, ମତରେ ଏହା କଟୁରସ, ଉଷ୍ଣବୀର୍ଯ୍ୟ, ସର୍ପାକ୍ଷୀ, ଉଲୁଣ୍ଟା, ପାବଂଗା, ଅଗ୍ନିବର୍ଦ୍ଧକ, କୋଷ୍ଠଶୋଧକ, ବୈଲିକା, ବହୁଭୂମିଜା, ଲମ୍ବଫଳା, ଏବଂ କଫ, ଶ୍ୱାସ, ବାତ ଓ କୃମି-ତାମ୍ରା, ଅର୍ଦ୍ଧଜା, ସିଂହଳସ୍ଥା, ନାଶକ । ]
ଛବଲ, ଲମ୍ବଦଣ୍ଡା, ସାବନେଡ୍ରୀ, ସବାଲ, କୁରୁମ୍ବୀ ।
सिंहली पीपल ମ. ସ୍ୱକ୍ ପିପ୍ପଲ୍ କର୍ଣ୍ଣାଟି. ବାହୁ ପିପ୍ପଲି ।

ସୈଂହିକ—ସଂ. ବ. ପୁଂ ( ସିଂହିକା+ଅପତ୍ୟାର୍ଥେ ଅ )—
Saimhika ସିଂହିକା ପୁତ୍ର; ରାହୁଗ୍ରହ—The Ascending
(ସୈଂହିକେୟ—ଅନ୍ୟରୂପ) Node; the Dragon's head.

ସୈକତ - ସଂ. ବଣ ( ସିକତା=ବାଲି+ବହ୍ୱର୍ଥେ ଅ )—୧ ।
Saikata ସିକତିଲ; ସିକତାବହୁଳ; ବାଲୁକାମୟ ( ସ୍ଥାନ ); ବାଲିଥିବା ( ଭୂମି )—1. Sandy; full of sand ( soil ). ୨ । ବାଲିରେ ତିଆରି—2. Made of sand. ବ—୧ । ନଦୀର ବା ସମୁଦ୍ରର ବାଲୁକାମୟ ତଟ; ପୁଳିନ ( ଥମର )—1. Sandy shore of a river or sea coast. ୨ । ବାଲିଅମାଟି ( ଭୂ. ଶ )—
2. Sandy soil.

ସୈକତଚର—ସଂ. ବଣ. ପୁଂ (ସୈକତ+ଚର ଧାତୁ+କର୍ତ୍ତୃ. ଅ)—
Saikatachara ସୈକତରେ ବିଚରଣକାରୀ—Walking
(ସୈକତଚରୀ—ସ୍ତ୍ରୀ) or moving in the sandy coast.

ସୈକତ ବାହିନୀ—ସଂ. ବଣ. ସ୍ତ୍ରୀ - ବାଲୁକାମୟ ତଟର ମଧ୍ୟ ଦେଇ
Saikata bāhinī ପ୍ରବାହିତା (ନଦୀ)—(river) Flowing through sandy soil

ସୈକତ ଭୂମି—ସଂ. ବ—୧ । ବାଲୁକାମୟ ଭୂମି—1. Sandy
Saikata bhūmi soil. ୨ । ବାଲୁକାମୟ ତଟ—
2. Sandy coast.

ସୈକତିକ - ସଂ. ବଣ. ପୁଂ (ସିକତା+ଇକ) - ୧ । ଶ୍ରମଜୀବୀ—1. A
Saikatika labourer. ୨ । ସନ୍ଦେହଜୀବୀ ( ମେଦିନୀ )—
2. Living a life full of doubt. ୩ । ସନ୍ଦିଗ୍ଧ—3. Doubting. ୪ । ସିକତା ସମ୍ବନ୍ଧୀୟ—
4. Sandy. ୫ । ସୈକତ ସମ୍ବନ୍ଧୀୟ—5. Relating to Saikata. ବ—୧ । ଭିକ୍ଷୁକ—
1. A Buddhist ascetic. ୨ । ଯାତ୍ରାକାଳରେ ହାତରେ ବନ୍ଧାଯିବା ମଙ୍ଗଳ ସୂତ୍ର ( ମେଦିନୀ )—2. An auspicious string tied on the arm before beginning a journey. ୩ । ସାଧୁ; ସନ୍ନ୍ୟାସୀ (ହ୍.
(ସୈକତିକା—ବଣ. ସ୍ତ୍ରୀ) ଶ)—3. An ascetic.

ସୈକତିଲ—ସଂ. ବଣ ( ସିକତା+ଇଲ; ଅଥବା ସିକତିଲ+ସ୍ୱାର୍ଥେ
Saikatila ଅ )—ସିକତାମୟ; ବାଲୁକାମୟ—Sandy.

ସୈକତୀ—ସଂ. ବଣ. ପୁଂ—ସୈକତାଯୁକ୍ତ; ବାଲୁକାମୟ (କୂଳ) (ହ୍ମ. ଶ)
Saikatī —Sandy ( shore )
( ସୈକତିନୀ—ସ୍ତ୍ରୀ )

ସୈକତେଷ୍ଟ—ସଂ. ବ ( ସୈକତ=ବାଲୁକାମୟ ସ୍ଥାନ+ଇଷ୍ଟ=ପ୍ରିୟ;
Saikateshta ବହୁବ୍ରୀହି)—ଅଦ୍ରକ; ଅଦା ( ରାଜନିର୍ଘଣ୍ଟ )—
Ginger. [ ଦ୍ର—ଏହା ବାଲୁକାମୟ ଭୂମିରେ ଉଠିଥାଏ । ] ବଣ—ବାଲୁକାମୟ ସ୍ଥାନ ଯାହାକୁ ସୁଖକର ବୋଧହୁଏ—Fond of sandy soil.

ସୈକାରିଆ—ଦେ. ବଣ—ସହକାରିଆ (ଦେଖ)
Saikāriā Sahikāriā (See)

ସୈଗୋ—ପ୍ରାଦେ (କଟକ) ବଣ—ଅଖଣ୍ଡ—
Saigo Undivided; unbroken.

ସୈତବାହିନୀ—ସଂ. ବ (ସିତ=ଶୁଭ୍ର+ବହ୍ ଧାତୁ+ଇନ୍+ଈ)—
Saitabāhinī ବାହୁଦା; ନଦୀବିଶେଷ—Name of a river issuing from Himalayas.

ସୈତମ୍ବା(ମ୍ମା)—ପ୍ରାଦେ (ସିଂହଭୂମ) ବ—ପିଜୁଳି—
Saitambā(mmā) Guava.

ସୈତାନ୍ ( ଇତ୍ୟାଦ )—ବୈଦେ. ବ—ସଇତାନ୍ ଇତ୍ୟାଦ ( ଦେଖ )
Saitān ( etc ) Saitān etc ( See )

ସୈତାନି (ଇତ୍ୟାଦ)—ବୈଦେ. ବ ଓ ବଣ—ସଇତାନି ଇତ୍ୟାଦ (ଦେଖ,
Saitāni (etc) Saitāni etc ( See )

ସୈ(ସୈଁ)ତିରିଶ—ଦେ. ବ ଓ ବଣ (ସଂ. ସପ୍ତତ୍ରିଂଶତ୍; ପ୍ରା. ସତ୍ତତ୍ତିସ)
Sai(saiṅ)tirisa —ସପ୍ତତ୍ରିଂଶ; ୩୭—Thirty seven.
সাঁইত্রিশ सैंतिस 37

ସୈଦ—ବୈଦେ. ବ ( ଅ )—ସୈୟଦ୍ ( ଦେଖ )
Said Saiyad See )

ସୈନ[ନି]—ଦେ. ବ ( ପଦ୍ୟ ) ( ସଂ. ସୈନ୍ୟ )—୧ । ସୈନ୍ୟ
Saina[ni] ( ଦେଖ )—1. Sainya ( See ) [ ଦ୍ର—
সেনা सैन, फउज ଚେତେ କାଟିଲେ ରୁଦ୍ର ସୈନ । ତା ଦେଖି ବେଗେ ଦେବ ମୁନି—ଜଗନ୍ନାଥ. ଭାଗବତ । ] ୨ । କୌଣସି ବ୍ୟକ୍ତିଙ୍କ ଗହଣରେ ଆସିଥିବା ବହୁ ଅନୁଚର—
2. A large body of followers or attendants accompanying a person.

ସୈନ ସାମନ୍ତ—ଦେ. ବ ( ସହଚର ଶବ୍ଦ; ସଂ. ସୈନ୍ୟ ଓ ସାମନ୍ତ )—
Saina sāmanta ୧ । ରାଜାଙ୍କ ସଙ୍ଗେ ଥିବା ସେନା ଓ
সৈন্য সামন্ত ସର୍ଦ୍ଦାର ଆଦ—1. Soldiers and noblemen
सैनसामन्त accompanying a king. ୨ । ବହୁ ସଂଖ୍ୟକ ଅନୁଚର—2. A large body of attendants.

ସୈନାନ୍ୟ—ସଂ. ବ ( ସେନାନୀ+ଭାବାର୍ଥେ ଯ )—ସେନାପତ୍ୟ ( ହ୍ରୁ. ଶ )—Generalship.
Sainānya

ସୈନାପତ୍ୟ—ସଂ. ବଣ ( ସେନାପତି+ସମ୍ବନ୍ଧାର୍ଥେ ଯ )—ସେନାପତି ସମ୍ବନ୍ଧୀୟ—Relating to a general. ବ ( +ଭାବ ଓ କର୍ମ. ଯ )—ସେନାଧ୍ୟକ୍ଷତା—Generalship; the position of a commander.
Saināpatya

ସୈନିକ—ସଂ. ବ ( ସେନା+ଇକ )—୧ । ସୈନ୍ୟଦଳଭୁକ୍ତ ବ୍ୟକ୍ତି; ଯୋଦ୍ଧୃପୁରୁଷ—1. Warrior; soldier. ୨ । ପ୍ରହରୀ—2. Sentry; sentinel; a guard. ୩ । ସେନାରକ୍ଷକ—3. Captain of soldiers. ୪ । ସେନା ଶ୍ରେଣୀ—4. A row or line of soldiers. ୫ । ମିଳିତ ହସ୍ତ୍ୟଶ୍ୱରଥପଦାତି—5. An army consisting of 4 kinds of soldiers. ୬ । କୌଣସି ପ୍ରାଣୀକୁ ବଧ କରିବା ପାଇଁ ନିଯୁକ୍ତ ବ୍ୟକ୍ତି ( ହ୍ରୁ. ଶ )—6. A person engaged to kill any living being. ୭ । (ନାମ) ଶମ୍ବରାସୁର ଦୈତ୍ୟର ଏକ ପୁତ୍ର ( ହ୍ରୁ. ଶ )—7. Name of son of demon Śambara. ବଣ—ସେନାସମ୍ବନ୍ଧୀୟ—Relating to an army; military; martial.
Sainika

ସୈନିକ ପୁରୁଷ—ସ. ବ—ଯୋଦ୍ଧା; ଯୋଦ୍ଧୃପୁରୁଷ—Warrior; soldier.
Sainika purusha

ସୈନିକ ବେଶ—ସଂ. ବ ( ୬ଷ୍ଠୀ ତତ୍ )—ଯୋଦ୍ଧାର ପୋଷାକ—Military dress.
Sainika beśa

ସୈନ୍ଦୂର—ସଂ. ବଣ (ସିନ୍ଦୂର+ଅ)—୧ । ସିନ୍ଦୂର ରଞ୍ଜିତ (ହ୍ରୁ. ଶ)—1. Painted with vermillion. ୨ । ସିନ୍ଦୂର ପରି ବର୍ଣ୍ଣବିଶିଷ୍ଟ ( ହ୍ରୁ. ଶ )—2. Vermillion-coloured.
Saindūra

ସୈନ୍ଧବ—ସଂ. ବଣ ( ସିନ୍ଧୁ+ଭବାର୍ଥେ ଅ )—୧ । ସମୁଦ୍ରଜାତ—1. Produced from the sea. ୨ । ସିନ୍ଧୁଦେଶଜାତ—2. Produced in the Sindh country. ୩ । ଐ ସମ୍ବନ୍ଧୀୟ—3. Relating to the sea or Sindh country. ବ—୧ । ସିନ୍ଧୁଦେଶଜାତ ଉତ୍କୃଷ୍ଟ ଅଶ୍ୱ—1. A breed of excellent horses of the Sind Province. ୨ । ସିନ୍ଧୁନଦ ନିକଟସ୍ଥ ଦେଶର ଉତ୍ପନ୍ନ ଲବଣବିଶେଷ—2. Rock salt; a kind of salt got from the Sindh country; sodium sulphate. [ ଦ୍ର—ସୈନ୍ଧବ ଲବଣ ସିନ୍ଧୁଦେଶର ବା ପଞ୍ଜାବର ଓ କୋହାଟର ଖଣିରୁ ମିଳେ । ଏହା ବିଶୁଦ୍ଧ ଲବଣ । ଏଥିରେ ୯୯ ଭାଗ ଲବଣ ଓ ୧ ଭାଗ କ୍ଷାର ଥାଏ । ଏହା ରୁଚ୍ୟ, ଚକ୍ଷୁଷ୍ୟ, ପାଚକ, ରୁଚିକର, ନେତ୍ର ହିତକର, ସ୍ୱାଦୁ, ତ୍ରିଦୋଷଘ୍ନ ଓ ଲଘୁ । ]
Saindhaba

ଅନ୍ୟ ସଂ—ଶୀତଶିବ, ମାଣିମନ୍ଥ, ସିନ୍ଧୁଜ, ଶିର, ସିନ୍ଧୁଦେଶଜ, ମାଣିବକ, ନାଦେୟ, ଶିବ, ଶିବ, ଶିବାତ୍ମଜ, ପଥ୍ୟ, ଶିତଶିବ ।

ସୈନ୍ଧବ ଲବଣ—ସଂ. ବ—ସିନ୍ଧୁଦେଶର ପର୍ବତଜାତ ଲବଣବିଶେଷ—Rock salt. [ଦ୍ର—ସୈନ୍ଧବ ତଳେ ନୋଟ୍ ଦେଖ । ]
Saindhaba labaṇa

ସୈନ୍ଧବୀ—ସଂ. ବ, ସ୍ତ୍ରୀ—ରାଗିଣୀବିଶେଷ—Name of a musical tune. [ ଦ୍ର—ଏହା ସମ୍ପୂର୍ଣ୍ଣ ଜାତିର ରାଗିଣୀ ଓ ଭୈରବ ରାଗର ପୁତ୍ରବଧୂରୂପେ କଳ୍ପିତା । ଏହା ଦିବସର ଦ୍ୱିତୀୟ ପ୍ରହରର ଦ୍ୱିତୀୟ ଘଡ଼ିରେ ଗେୟ—ହ୍ରୁ ଶ । ] ବଣ. ସ୍ତ୍ରୀ—ସିନ୍ଧୁଦେଶୀୟା—( female ) Pertaining to Sindh. [ ଉ—ହେମ ସାରସନେ ଗାଢ଼େ ବାନ୍ଧି ସିହକଟି; ଅମର ସୈନ୍ଧବୀ ତମୁ—ରାଧାନାଥ. ମହାଯାତ୍ରା ।
Saindhabī

ସୈନ୍ଧୀ—ସ. ବ ( ସିନ୍ଧୁ+ଈ )—ତାଳାଦିରସ ନିର୍ଯ୍ୟାସ; ତାଡ଼ି—Intoxicating juice of palm etc; toddy. ଅନ୍ୟ ସ. ନାମ—ହାଳା [ଦ୍ର—ବୈଦ୍ୟକ ମତରେ ଏହା ଶୀତଳ, କଷାୟ ଅମ୍ଳ ଓ ପିତ୍ତଦାହନାଶକ ଓ ବାତବର୍ଦ୍ଧକ ।]
Saindhī

ସୈନ୍ୟ—ସ. ବ (ସେନା+ସ୍ୱାର୍ଥେ ଯ)—୧ । ଯୁଦ୍ଧକାମୀ, ଅସ୍ତ୍ରଧାରୀ ବ୍ୟକ୍ତି; ଯୋଦ୍ଧା; ସିପାହୀ—1. Soldier. ୨ । ସେନାଦଳ; ପଲଟଣ (ହ୍ରୁ. ଶ)—2 A body of soldiers. ୩ । ପ୍ରହରୀ ହ୍ରୁ. ଶ)—3. Sentry. ୪ । ଶିବିର; ଛାଉଣୀ (ହ୍ରୁ. ଶ)—4. Camp. ୫ । ଶ୍ରେଣୀବଦ୍ଧ ଯୋଦ୍ଧୃବୃନ୍ଦ; ସମବେତ ସେନା—5. Army; a troop or company of armed soldiers arrayed for fighting. [ ଦ୍ର—ପୂର୍ବକାଳରେ ଯୁଦ୍ଧରେ ମିଳିତ ହସ୍ତୀ, ଅଶ୍ୱ, ରଥ ଓ ପଦାତି ଏହି ଚତୁରଙ୍ଗ ବଳକୁ ସେନା ବା ବଳ ବୋଲାଯାଉଥିଲା ।
Sainya

ଏହି ସେନାରେ ଏକଦେଶୀଭୂତ ଯୋଦ୍ଧୃବୃନ୍ଦଙ୍କୁ ସୈନ୍ୟ ବା ସୈନିକ ବୋଲାଯାଉଥିଲା । ସୈନ୍ୟମାନଙ୍କୁ ହିନ୍ଦୁମାନେ ଛଅ ଶ୍ରେଣୀରେ ବିଭକ୍ତ କରିଥିଲେ । ଯଥା—

୧ । ମୌଳ, ୨ । ଭୃତ୍ୟ, ୩ । ସୁହୃତ୍, ୪ । ଶ୍ରେଣୀ, ୫ । ଦ୍ୱିଷତ୍, ୬ । ବନ୍ୟ । ] ସ. ବଣ—ସେନା ସମ୍ବନ୍ଧୀୟ (ହ୍ରୁ. ଶ)—Relating to the army or soldiers. ଦେ. ବ—ସମୂହ; ଏକ ଜାତୀୟ ଅନେକ—Many of the same kind; a multitude. [ଉ—ଅନୁକୂଳ ହୋଇଣ ବହିବ ପବନ, ପଛେ ଥିବେ ବକଗୃଧ୍ରସୈନ୍ୟ । ନୃସିଂହ. ମହାଭାରତ. ଶାନ୍ତିପର୍ବ ।]

सैन्य
सैन

ସୈନ୍ୟ କକ୍ଷ—ସ. ବ (୬ଷ୍ଠୀ ତତ୍)—ସେନାର ପାର୍ଶ୍ୱ—The flank of an army.
Sainya kaksha

ସୈନ୍ୟ କ୍ଷୋଭ—ସ. ବ (୬ଷ୍ଠୀ ତତ୍ ବା ୭ମୀ ତତ୍)—ସେନାର ବିଦ୍ରୋହ (ହ୍ରୁ. ଶ)—Mutiny amongst soldiers.
Sainya kshobha

ସୈନ୍ୟ ଚାଳନ—ସ. ବ (୬ଷ୍ଠୀ ତତ୍)—୧ । ଯୁଦ୍ଧାର୍ଥ ସଜ୍ଜିତ ସୈନ୍ୟମାନଙ୍କ ଗତିବିଧିର ନିୟନ୍ତ୍ରଣ—
Sainya chālana

1. Directing the movements of an army. ୨ । ସେନାକୁ ଆଗକୁ ବା ପଛକୁ ଚଳାଇବା—2. Causing the army to advance or move.

ସୈନ୍ୟ ଦଳ—ସଂ. ବି—ସୈନ୍ୟମାନଙ୍କର ଏକତ୍ର ସମାବେଶ—
Sainya dala A company of soldiers.

ସୈନ୍ୟ ପତି (ନାୟକ, ପାଳ)—ସଂ. ବି—ସେନାପତି—
Sainya pati (nāyaka, pāla) General.

ସୈନ୍ୟ ପରିଚାଳନ—ସଂ. ବି—ସୈନ୍ୟ ଚାଳନ (ଦେଖ)
Sainya parichālana Saiyna chālana (See)

ସୈନ୍ୟ ପୃଷ୍ଠ—ସଂ. ବି ( ୬ଷ୍ଠୀ ତତ୍ ) —ସମ୍ମିଳିତ ସୈନ୍ୟମାନଙ୍କର
Sainya prushṭha ପଶ୍ଚାଦ୍ଭାଗ (ଯେଉଁଠାରେ ରାଜା କିମ୍ବା ଠାଇ ଅବେଶ ଦ୍ୱାରା ସେନା ଚାଳନ କରନ୍ତି)—
The rear of an army.

ସୈନ୍ୟ ବଳ—ସଂ. ବି—୧ । ( ରାଜାଙ୍କର ) ସୈନ୍ୟରୂପ ଶକ୍ତି ବା
Sainya bala କ୍ଷମତା—1. The strengh of an army. ୨ । (ଏକାର୍ଥକ ସହତର) ସମ୍ମିଳିତ ସୈନିକଦଳ—
2. Collected troops.

ସୈନ୍ୟ ବାସ(ନିବାସ)—ସଂ. ବି (୬ଷ୍ଠୀ ତତ୍ )—ଶିବିର; ଛାଉଣୀ—
Sainya bāsa(nibāsa) Camp.

ସୈନ୍ୟ ବିଭାଗ—ସଂ. ବି (୬ଷ୍ଠୀ ତତ୍ )—ରାଜକାର୍ଯ୍ୟ ବିଭାଗ ବିଶେଷ;
Sainya bibhāga ସୈନ୍ୟମାନଙ୍କର ଯାବତୀୟ କାର୍ଯ୍ୟର ତତ୍ତ୍ୱ ଯେଉଁ ବିଭାଗ ନିଏ—The Army Department.

ସୈନ୍ୟ ବ୍ୟୂହ—ସଂ. ବି ( ୬ଷ୍ଠୀ ତତ୍ )—ଯୁଦ୍ଧାର୍ଥ ସଜ୍ଜିତ ଓ ନିର୍ଦ୍ଦିଷ୍ଟ
Sainya byūha ପ୍ରଣାଳୀରେ ସମାବେଶିତ ସୈନ୍ୟଦଳ—
Battle array.

ସୈନ୍ୟ ସଞ୍ଚାଳନ—ସଂ. ବି ( ୬ଷ୍ଠୀ ତତ୍ )—ସୈନ୍ୟ ଚାଳନ (ଦେଖ)
Sainya sanchālana Sainya chālana (See)

ସୈନ୍ୟ ସମାବେଶ—ସଂ. ବି ( ୬ଷ୍ଠୀ ତତ୍ )—୧ । ଯୁଦ୍ଧ ବା ଅନ୍ୟ
Sainya samābesa ଉଦ୍ଦେଶ୍ୟରେ ସୈନ୍ୟମାନଙ୍କର ସମ୍ମିଳନ-
1. The disposition of an army. ୨ । ସୈନ୍ୟ-ବ୍ୟୂହ—2. Military array; arrangement of troops in battle order.

ସୈନ୍ୟ ସାମନ୍ତ—ସଂ. ବି (ଦ୍ୱନ୍ଦ୍ୱ)—ରାଜାଙ୍କ ସଙ୍ଗେ ଯୁଦ୍ଧଭୂମିରେ ଉପସ୍ଥିତ
Saiyna sāmanta ବା କୌଣସି ସ୍ଥାନକୁ ଯାଉଥିବା ସୈନ୍ୟଦଳ ଓ ଅଧୀନ ରାଜଗଣ—An army and Feudatory Chiefs accompanying a king.

ସୈନ୍ୟାଗ୍ର—ସଂ. ବି (୬ଷ୍ଠୀ ତତ୍)—ସମ୍ମିଳିତ ସେନାଦଳର ଅଗ୍ରଭାଗ—
Sainyāgra The front of an army.
(ସୈନ୍ୟ ଶିର—ଅନ୍ୟରୂପ)

ସୈନ୍ୟାଧ୍ୟକ୍ଷ—ସଂ. ବି ( ୬ଷ୍ଠୀ ତତ୍ )—ସେନାପତି; ସେନାନାୟକ—
Sainyādhyaksha Commander or general of an army.
(ସୈନ୍ୟାଧିପତି—ଅନ୍ୟରୂପ)

ସୈପ(ପି,ଫ,ଫି)ନ୍—ବୈଦେ. ବି (ଇଂ)—ସଇପନ୍ (ଦେଖ)—
Saipa(pi,pha,phi)n Saipan (See).

ସୈବାଳ—ସଂ. ବି (ଅନ୍ୟରୂପ ଶୈବାଳ; ସେବା + ଅଲ ଧାତୁ = ଭୂଷିତ
Saibāla କରିବା + କର୍ତ୍ତୃ. ଅ )—ଶୈବାଳ; ଶିଉଳ—Moss.

ସୈମନ୍ତିକ—ସଂ. ବିଣ ( ସୀମନ୍ତ + ଇକ )—ସୀମନ୍ତସମ୍ବନ୍ଧୀୟ—
Saimantika Relating to the parting of the hair in the middle of the forehead. ବି—ସିନ୍ଦୂର (ଏହା ସୀମନ୍ତରେ ଦିଆଯାଉଥିବାରୁ)—Vermillion.

ସୈୟଦ—ବୈଦେ. ବି ( ଆ )—୧ । ମୁସଲମାନଧର୍ମପ୍ରବର୍ତ୍ତକଙ୍କ କନ୍ୟାର
Saiyad ମହମ୍ମଦଙ୍କ ଦୌହିତ୍ର ଅଲିଙ୍କ ପୁତ୍ର ହୁସେନଙ୍କ
সৈয়দ सैयद ବଂଶଧରମାନଙ୍କର ବଂଶୋପାଧି—
1. Syed; a family-title of a Mahomedan descended from the daughter's son of Prophet Mahammad. [ଦ୍ର—ଏହା ନାମ ପୂର୍ବେ ଲାଗେ । ଯଥା—ସୈୟଦ୍ ସାଲାବତ୍ ଅଲ୍ଲୀ ।] ୨। ଉଚ୍ଚବଂଶୀୟ ମୁସଲମାନମାନଙ୍କର ବଂଶୋପାଧିବିଶେଷ—2. A family-title of Muslim nobles. [ ଦ୍ର—ପୂର୍ବେ ଭାରତବାସୀମାନେ ଭାରତକୁ ଆକ୍ରମଣ କରିବା ମୁସଲମାନମାନଙ୍କୁ ୪ ଶ୍ରେଣୀରେ ବିଭକ୍ତ କରୁଥିଲେ;—ସେଖ୍, ସୈୟଦ୍, ମୋଗଲ୍, ପଠାଣ; କିନ୍ତୁ ଏ ବିଭାଗ ଧର୍ମ ବା ସାମ୍ପ୍ରଦାୟିକ ବିଭାଗ ନୁହେଁ ।]

ସୈର୍—ବୈଦେ. ବି (ଫା. ସାଏର୍)—ସଇର୍ (ଦେଖ)—
Sair Sair (See).
(ସୈୱର୍, ସୈୱର୍ ଜମା—ଅନ୍ୟରୂପ)

ସୈର(ରି)ନ୍ଧ୍ର—ସଂ. ବି. ପୁଂ (ସୈର=ଇଚ୍ଛାମତ + ଧୃ ଧାତୁ = ଧାରଣ
Saira(ri)ndhra କରିବା + କର୍ତ୍ତୃ. ଅ, ନିପାତନ; କିମ୍ବା ସୀର=
[ସୈର(ରି)ନ୍ଧ୍ରୀ—ସ୍ତ୍ରୀ] ଲାଙ୍ଗଳ + ଧୃ ଧାତୁ + କର୍ତ୍ତୃ. ଅ, ନିପାତନ.
୧ । କୃଷକ; ଚଷା—1. A cultivator; a husbandman. ୨ । ଗୃହଦାସ; ଗୃହକର୍ମକାରୀ ଭୃତ୍ୟ (ହି. ଶ)—2. A menial domestic servant. ୩। ଦସ୍ୟୁପିତା ଓ ଅୟୋଗବଜାତୀୟା ମାତାଙ୍କଠାରୁ ଉତ୍ପନ୍ନ ସଙ୍କରଜାତିବିଶେଷ (ହି. ଶ)—3. Name of a low-caste hybrid.

ସୈର(ରି)ନ୍ଧ୍ରୀ—ସଂ. ବି. ସ୍ତ୍ରୀ (ସୈରନ୍ଧ୍ର, ସୈରିନ୍ଧ୍ର + ଈ)—୧ । ଶିଳ୍ପ-
Sair(ri)ndhri କର୍ମ ଓ ବେଶଭୂଷା କର୍ମରେ ଦକ୍ଷା, ପର-
[ସୈର(ରି)ନ୍ଧ୍ରିକା—ଅନ୍ୟରୂପ] ଗୃହସ୍ଥିତା ସ୍ୱବଶା ଭୃତ୍ୟା; ଅସ୍ୱା; ଅନ୍ୟଗୃହସ୍ଥିତା ସ୍ୱବଶା ଶିଳ୍ପକାରିଣୀ—1. A female ( skilled in various arts and toilette) artisan in the service of a rich householder or Raja; an Ayah. ୨ । କୃଷୁଣୀ—2. A female of the cultivator class. ୩ । ବର୍ଣ୍ଣସଙ୍କର ସୈରନ୍ଧ୍ରଜାତୀୟା ସ୍ତ୍ରୀ (ଦେଖ)—3. A woman of the Sairandhra caste. ୪ । ଦ୍ରୌପଦୀ (ପାଣ୍ଡବମାନେ ବିରାଟଗୃହରେ

ଅଜ୍ଞାତବାସ କରୁଥିବାବେଳେ ଦ୍ରୌପଦୀ ଆପଣାର ଏହି ନାମରେ ପରିଚୟ ଦେଇ ବିରାଟରାଜ୍ଞୀ ସୁଦେଷ୍ଣାଙ୍କ ଅନୁଚରୀ ହୋଇଥିଲେ)—4. The assumed name of Draupadī while living incognito in the harem of the king of Birāta. ୫। ଅନ୍ତଃପୁର ପରିଚାରିକା; ମହଲ୍ଦାସୀ [ହି. ଶ]—5. A maid servant of the harem. ୬। ବର୍ଣ୍ଣସଙ୍କରସମ୍ଭୂତା ସ୍ତ୍ରୀ ( ମେଦଣୀ )—6. A woman of hybrid parentage.

ସୈରିକ—ସଂ. ବିଣ ( ସୀର=ଲଙ୍ଗଳ+ଇକ )—ଲଙ୍ଗଳ ସମ୍ବନ୍ଧୀୟ—
Sairika Relating to the plough. ବି—୧। ହଳୁଆ; ଯେ ହଳ ବୁଲାଏ—1. Ploughman. ୨। ଚଷା; କୃଷକ—2. Cultivator; husbandman. ୩। ହଳଆ ଗୋରୁ—3. A plough-bullock. ୪। ଆକାଶ [ ହି. ଶ ]—4. The sky.

ସୈରିଭ—ସଂ. ବି ( ସୀର=ଲଙ୍ଗଳ+ଇଭ )—୧। ( ପୁଂ ) ମହିଷ
Sairibha [ ଅମର ]—1. Buffalce, ୨। ସ୍ୱର୍ଗ [ ତ୍ରିକାଣ୍ଡ
[ ସୈରିଭୀ—ସ୍ତ୍ରୀ ] ଶେଷ ]—2. Heaven.

ସୈରୀୟ—ସଂ. ବି ( ସୈ ର=ସ୍ୱଇଚ୍ଛାରେ ଅର୍ଥାତ୍ ବିନା କୃଷିରେ+ଈୟ;
Sairiya ଜଦାତନ )—ଝିଣ୍ଟୀ; ଦାସକେରଣ୍ଡା [ ଶବ୍ଦମାଳା, ଭରତ ]—Barlaria Cristata. [ ବି—ଏହା କୃଷ୍ଣ,
ଝିଣ୍ଟି, ଶ୍ୱେତ ଝିଣ୍ଟି
କଟସରୈୟା
ମ. କୋରଣ୍ଡା
ବାୟୁ, ରକ୍ତଦୋଷ, କଫ, କଣ୍ଡୁ ଓ ବିଷନାଶକ, ତିକ୍ତ ମଧୁରରସ, କୁଷ୍ଠନାଶକ ଓ ଦନ୍ତର ଅମ୍ଲ, ସ୍ନିଗ୍ଧ ଓ କେଶରଞ୍ଜକ ।
ଫୁଲର ବର୍ଣ୍ଣଭେଦରେ ସୈରୀୟ ୪ ପ୍ରକାରର । ଯଥା—
୧ । ଶ୍ୱେତ ସୈରୀୟ—ଧଳା ଫୁଲ ଦାସକେରେଣ୍ଡା । ଅନ୍ୟ ସଂ—ସୈରେୟ, ସୈରୀୟକ, ସୈରେୟକ, ଶ୍ୱେତ ପୁଷ୍ପ, କାଣ୍ଟସାରିକା, କଣ୍ଟସାରିକା, ସହାଚର, ସହଚର, ଝିଣ୍ଟୀ ।
୨ । ପୀତ ସୈରୀୟ—[ ହଳଦିଆ ଫୁଲ ] । ଅନ୍ୟ ସଂ—କୁରଣ୍ଟକ, ଦାସୀ, ଅର୍ତ୍ତଗଳ ।
୩ । ରକ୍ତ ସୈରୀୟ—[ ନାଲି ଫୁଲ ] । ଅନ୍ୟ ସଂ—କୁରୁବକ, ଓଡ଼ଅଁ/ଅଳଁ ଲେଇ ଫୁଲ ।
୪ । ନୀଳ ସୈରୀୟ—[ ନେଳୀ ଫୁଲ ] । ଅନ୍ୟ ସଂ—ବାଣା, ଗଳ । ]

ସୈରୀୟକ—ସଂ. ବି ( ସୈରୀୟ+ସ୍ୱାର୍ଥେ କ )—ସୈରୀୟ [ ଦେଖ ]
Sairiyaka Sairiya [ See ]

ସୈରେୟ—ସଂ. ବି ( ସୈର+ଏୟ+କ ) —ସୈରୀୟ [ ଦେଖ ]
Saireya Sairiya [ See ]
( ସୈରେୟକ—ଅନ୍ୟରୂପ )

ସୈଲଗ—ସଂ. ବି—ଡକାଏତ ( ହି. ଶ )—
Sailaga A-dacoit.

ସୈଲାବ—ଗ୍ରାଦେ. ( ବାଲେଶ୍ୱର ) ବି ( ଭୁଲ. ଫା. ସୈଲାବ—ଧୋଇଆ
Sailāb! ଜମି )—ଅନେକ ଦିନ ବ୍ୟାପି ହେବା ବର୍ଷା, ଝଡ଼ ଓ ତୋଫାନ—Hurricane accompanied with rain continuing for many days. [ ବି—ଉତ୍କଳର ନଅଙ୍କ ଦୁର୍ଭିକ୍ଷର ପରବର୍ଷ ( ଅର୍ଥାତ୍ ୧୮୬୭ ସାଲରେ ) ହୋଇଥିବା ବଡ଼ ଝଡ଼, ତୋଫାନର ଏହି ନାମ । ]

ସୈଶ—ବୈଦେ. ବି ( ଫା. ସାଇସ୍ )—ସଇଶ [ ଦେଖ ]
Saiśa Saiśa [ See ]

ସୈଶି—ଦେ. ବି—ସଇଶି [ ଦେଖ ]
Saiśi Saiśi [ See ]

ସୈଶିଆ—ବୈଦେ. ବିଣ—ସଇଶିଆ [ ଦେଖ ]
Saiśiā Saiśiā [ See ]

ସୈସ—ସଂ. ବିଣ ( ସୀସ+ଅ )—ସୀସାଧାତୁ ସମ୍ବନ୍ଧୀୟ ( ହି. ଶ )—
Saisa Relating to lead ( metal ); leaden.

ସୈ ସଙ୍ଗାତ—ଦେ. ବି—ସହି ସଙ୍ଗାତ [ ଦେଖ ]
Sai sangāta Sahi sangāta [ See ]

ସୈହ—ଗ୍ରା. ବିଣ ( ସଂ. ସହ୍ୟ; ସହ୍ୟର ଅଶୁଦ୍ଧ ଉଚ୍ଚାରଣ )—ସହ୍ୟ
Saiha [ଦେଖ ]—Sahya [ See ]

ସୋ ( ଧାତୁ )—ସଂ—୧ । ବିନାଶ କରିବା; ମାରିବା—1. To kill.
So ( root ) ୨ । ସମାପ୍ତ କରିବା—2. To finish.

ସୋଆଗ ( ଇତ୍ୟାଦି )—ଦେ. ବି—ସୁହାଗ ଇତ୍ୟାଦି [ ଦେଖ ]
Soāga ( etc ) Suhāga [ See ]

ସୋଆଗା—ଦେ. ବି—ସୁହାଗା [ ଦେଖ ]
Soāgā Suhāgā [ See ]

ସୋଆଗୀ—ଦେ. ବିଣ ( ସ୍ତ୍ରୀ ଓ ପୁଂ )—ସୁହାଗୀ ( ଦେଖ )
Soāgi Suhāgi ( See )
(ସୋହାଗେଇ—ଅନ୍ୟ ସ୍ତ୍ରୀ. ରୂପ) (ସୋଅଗିଆ—ଅନ୍ୟ ପୁଂ. ରୂପ)

ସୋଆଗେଇ ହେବା—ଦେ. କ୍ରି—ସୁହାଗେଇ ହେବା ( ଦେଖ )
Soāgei hebā Suhāgei hebā ( See )

ସୋଇ—ଦେ. ବି—୧ । ଏକପ୍ରକାର ରୋହିମାଛ—1. A species of
Soi Rohi fish. [ ବି—ଏମାନେ ଅଳ୍ପରେ ରୋହିମାଛଠାରୁ ସାନ ଓ ଏମାନଙ୍କ ବର୍ଣ୍ଣ ଫିକା । ଏମାନଙ୍କ ପିତ୍ତ କଫ ଓ ସନ୍ନିପାତ ରୋଗୀକୁ ଖୁଆଇବାକୁ ହୁଏ । ] ୨ । [ ସ୍ତ୍ରୀ ] କାହାଣୀ ବର୍ଣ୍ଣିତ ରାଜାଙ୍କର ଦ୍ୱିତୀୟା ରାଣୀ—2. The name of the king's less honored wife in the folktales) ( ବି—କାହାଣୀରେ ଏ ରାଣୀ ରାଜାଙ୍କ ବିରାଗଭାଜନ ହୋଇ ନାନାବିଧ କଷ୍ଟ ଓ ଅପମାନ ଭୋଗ କରନ୍ତି । ]

ସୋଇଁ—ଗ୍ରା. ବି ( ସ୍ୱାମୀ )—ସ୍ୱଅଁ; କେତେକ ଚଷା, ଦୁବ ଓ ମାସ୍ତାନ
Soiṅ ବ୍ରାହ୍ମଣଙ୍କର ବଂଶୋପାଧିବିଶେଷ—Family-title of some Śūdras and Māstāna Brāhmaṇas.

ସୋଇ ବଢ଼ନ୍ତି—ପ୍ରାଦେ (ବାଲେଶ୍ୱର) ବି—ସ୍ୱାଇ ବା ସୁଅଇ ବା ¼
S›i bardbanti — ସୁଧ ହାରରେ ଧାନ କରଜ ଦିଆଯିବା ସର୍ତ୍ତରେ ଅଦାୟ ହେବା ସୁଧ—Interest accruing on paddy lent at the rate of ¼ or 25 per cent per annum interest. [ଉ—ଧାନ ବର୍ଷକୁ ସୋଇ ବଢନ୍ତିରୁ ବେଶି ନୁହେଁ—ଫକୀରମୋହନ ମାମୁ]

ସୋଇଲ୍—ଦେ· ବି (ଜାହାଜୀଅ ଶବ୍ଦ) ଦକ୍ଷିଣ ଦିଗ—
Soil — The south point of the mariner's compass (nautical term).

ସୋଅବତ୍ (ଇତ୍ୟାଦି)—ବୈଦେ· ବି ସୋହବତ ଇତ୍ୟାଦି (ଦେଖ)
So-abat (etc) — Sohabat etc (See)

ସୋଁ—ଦେ (ଧ୍ୱନ୍ୟନୁକରଣ) ଅ—ପବନ ବହିବାର ବା ଜୋରରେ ନିଶ୍ୱାସ ମାରିବାର , ଶବ୍ଦ—The sound of loud hissing.
Soñ (ସୋଁ ସୋଁ—ଅନ୍ୟରୂପ) सों सों सनसन [ ଉ—କିବା ସୁଁ ସୁଁ ପାରୁ ଉଡ଼ନ୍ତେ ଥିବ ।]

ସୋଇଁ—ଗ୍ରା. ବି—ସୋଇଁ (ଦେଖ)
Soiñ — Soiñ (See)

ସୋଁଣ୍ଟା—ଦେ· ବିଣ ଓ ବି—ସୋଣ୍ଟା (ଦେଖ)
Sonṭā — Soṭā (See)
ବୈଦେ (ଇଂ·ସୋଡ଼ା) ପ୍ରାଦେ (ମେଦିନୀପୁର) ବି—ସୋଡ଼ା—Soda.

ସୋଁଠା(ଟା)—ଦେ·ବି (ସଂ·ଶୁଣ୍ଡ)—ସୁନା ବା ରୁପାର ଏକପ୍ରକାର ଲମ୍ବ ଓ ମୋଟ ବାଡ଼ି—A sort of long and thick stick made of gold or silver.
Sonṭhā(ṭā) सोंटा सोंटा ୨ । ସୋଠା(ଠା) (ଦେଖ)—2. Soṭā(ṭhā) (See) [ଉ—ଦରବାର ଓ ଶୋଭାଯାତ୍ରାରେ ରାଜା ଆଦିଙ୍କ ଆଗେ ଆଗେ ଏ ଯଷ୍ଟିଧାରକ ବ୍ୟକ୍ତିମାନେ ଚାଲନ୍ତି । କିବା ସୁନାରେ ବା ରୁପାରେ ତିଆରି ହୁଏ ।]

ସୋଁଠା(ଟା) ବର୍ଦାର୍—ଦେ· ବି—ରାଜା ଆଦିଙ୍କ ସବାରୀ ସଙ୍ଗେ ଚାଲୁଥିବା ସୋଁଠାଧାରୀ ଭୃତ୍ୟ—
Sonṭhā(ṭā) bar-dār — Carriers of long and thick sticks accompanying a Raja in a procession.

ସୋଁବାର (ଇତ୍ୟାଦି)—ଗ୍ରା· ବି—ସୋମବାର ଇତ୍ୟାଦି (ଦେଖ)
Soñbāra (etc) — Somabāra etc. (See)

ସୋଃ—ସଂ. ବି· ସ୍ତ୍ରୀ (ସୋ ଧାତୁ+ଡ୍ୱସ୍)—ପାର୍ବତୀ (ଶବ୍ଦ କଳ୍ପଦ୍ରୁମ)—
Soḥ — Goddess Pārbatī.

ସୋ କେଶ୍—ବୈଦେ· ବି (ଇଂ)—ମନୋହର ଓ ଅଳଙ୍କାର ଦୋକାନମାନଙ୍କର ଦୋକାନରେ ରଖିଥିବା କାଚର କାକ୍ସ (ଯହିଁରେ ବନ୍ଦ ହୋଇ ରହିଥିବା ପଣ୍ୟଦ୍ରବ୍ୟମାନ ଦର୍ଶକଙ୍କୁ ପ୍ରଦର୍ଶିତ ହୁଏ)—A show case.
So kes सो केश् सोकेश

ସୋଖତା—ଦେ· ବି (ଫ· ସୋଖତ)—ବ୍ଲଟିଙ୍ଗ୍ କାଗଜ—
Sokh-tā सोखता, ब्लटिङ्ग सोखता, स्याहि सोख — Blotting paper.

ସୋଗତ—ଦେ· ବି [ଫ· ସୁଗୋଇ (ଗୋପୀନାଥ ନନ୍ଦ), କିମ୍ବା ସ୍ୱାଗତ)—
So-gata ୧ । ସ୍ନେହ—1. Affection. ୨ । ଆପଣା ଗୋତ୍ର—2. One's gotra. ବିଣ—ସ୍ନେହୀ—Affectionate.
स्नेह स्नेह

ସୋଗଲ ରେଖା—ପ୍ରାଦେ (ଗଞ୍ଜାମ) ବି—କାନର ଅଳଙ୍କାର ବିଶେଷ—
Sogala rekhā — A sort of ear-ring.

ସୋଗା—ପ୍ରାଦେ. (ଜୟପୁର) ବି—ଛୋରି—
Sogā — Dagger.

ସୋଚଳ(ଲ)—ଦେ· ବି (ସଂ· ସୌବର୍ଚ୍ଚଳ)—ସୌବର୍ଚ୍ଚଲ; ଗାରିଲୁଣ
Sochala(la) सचल काला नमक, सोंचल — A kind of salt; chloride of sodium mixed with sulphate of soda and potassium.

ସୋଚ୍(ଚେ)ଇବା—ଦେ· କ୍ରି—୧ । ସୂଚିବା (ଦେଖ)
Sochā(che)ibā सोचाना सूचना — 1. Sūchibā (See) ୨ । ଶୋକାକୁଳ କରାଇବା—2. To cause sorrow.
शोकाकुल करा सो(सु)चाना

ସୋଚିବା—ଦେ. କ୍ରି—୧ । ସୂଚିବା (ଦେଖ)—1. Sūchibā
Sochibā (See) ୨ । ଶୋକ କରିବା—2. To grieve; to be sorrowful. ୩ । ପସ୍ତାଇବା—3. To repent.
सोचा, मने कवा सोचना पस्तान सोक करना, पस्ताना

ସୋଜ୍—ପ୍ରାଦେ. (ସମ୍ବଲପୁର) କ୍ରି· ବିଣ—ବୃଥା—
S`j — In vain.

ସୋଜ—ସଂ. ବି· ପୁଂ (ସୋ=ପାର୍ବତୀ+ଜନ୍ ଧାତୁ+କର୍ତ୍ତୃ. ଅ)—
Soja — ଗଣେଶ—God Gaṇesa.

ସୋଜା—ଦେ. ବିଣ (ଫ. ସହଜ; କିମ୍ବା ଶୁଦ୍ଧ; କିମ୍ବା ଋଜୁ; ବଙ୍ଗଳାରୁ ଅନୁକୃତ)—୧ । ସରଳ; ସିଧା; ସଳଖ—1. Straight. ୨ । ସହଜ—2. Easy. ୩ । ସରଳ; କପଟହୀନ—3. Frank.
Sojā सोजा सीधा, सोझा

ସୋଜା ସୁ(ସୋ)ଜି—ଦେ କ୍ରି· ବିଣ (ବଙ୍ଗଳାରୁ ଅନୁକୃତ)—
Sojā su(so)ji ସିଧାଏ ସିଧାଏ—Straightway.
सोजा सुजि सिधासिधि

ସୋଜି—ପ୍ରାଦେ. (ଗଞ୍ଜାମ) ବି—ସୁଜି—
Soji — Semola; coarse wheaten flour.

ସୋଝ (ଇତ୍ୟାଦି)—ଦେ· ବି—ଶୁଝ ଇତ୍ୟାଦି (ଦେଖ)
Sojha (etc) — Sujha etc. (See)

ସୋଟ(ଠ)—ଦେ· ବିଣ (ମୋଟ ଶବ୍ଦ ସହିତ ନିରର୍ଥକ ସହଚର ରୂପେ ବ୍ୟବହୃତ)—ମୋଟ; ସୋଟ; ସ୍ଥୂଳକାୟ—
Soṭa(ṭha) मोटा सोटा मोटा सोटा — Thick; stout. (ଯଥା—ମୋଟ ସୋଟ, ମୋଟ ସୋଟ) ବି—ସୁଟ (ଦେଖ)—Suṭa (See)

ସୋଠା(ଠା)—ଦେ. ବିଣ (ମୋଟା ଓ ମୋଟା ସଙ୍ଗେ ନିରର୍ଥକ ସହଚର ରୂପେ ବ୍ୟବହୃତ)—୧ । ମୋଟା—1. Thick.
S.ṭā(ṭhā) मोटा ୨ । ସ୍ଥୂଳକାୟ—2. Stout. ୩ (ସଂ. ସ୍ଥୂଳ କିମ୍ବା
मोटा सोटा ପା. ସୋଠା=ଠେଙ୍ଗା)—୧ । ଲଠି; ଠେଙ୍ଗା; ସ୍ଥୂଳ

ଦଣ୍ଡ—1. A thick stick. ୨ । ରାଜଦଣ୍ଡ; ରାଜ୍ୟ-
সোঁটা, সোটা ଶାସନାଧିକାର ସୂଚକ ଦଣ୍ଡ (ଯାହାକୁ ରାଜା ଓ
सोंटा ମହନ୍ତମାନଙ୍କ ଗହଣରେ ସୋଟାବର୍‌ଦାର୍‌ମାନେ ବହନ
କରନ୍ତି)—2. Mace; one of the insignia of
সোডা सोडा royalty or majesty.—ବୈଦେ. ବି (ଇଂ.
ସୋଡ଼ା)—ସୋଡ଼ା—Soda.

ସୋଟା(ଠା) ବର୍‌ଦାର୍‌—ଦେ. ବି—ରାଜା ଓ ମହନ୍ତଅଦିଙ୍କ ଗହଣରେ
Soṭā(ṭhā) bar-dār ସୋଟା ବା ସ୍ଥୂଳଦଣ୍ଡ ବହନ କର
সোটাবরদার सोंटाबरदार ଲୋକ; ଦଣ୍ଡଧର—
Mace-bearer in the retinue of kings,
Mahants and other high personages.

ସୋଟା(ଠା) ବାଡ଼ି—ଦେ. ବି ( ସହଚର ଶବ୍ଦ )—ଠେଙ୍ଗା ଓ ଛଡ଼ି—
Soṭa(ṭhā) bāṛi Sticks thick and thin.
সোটা লাঠি सोंटाडंडा

ସୋଟୀ(ଠୀ)—ଦେ. ବିଣ. ସ୍ତ୍ରୀ—(ମୋଟୀ ଶବ୍ଦ ସଙ୍ଗେ ନିରର୍ଥକସହଚର-
Soṭī(ṭhī) ରୂପେ ବ୍ୟବହୃତ ) ୧। ସୋଟା ଶବ୍ଦର ସ୍ତ୍ରୀଲିଙ୍ଗ—
মোটী मोटीसोटी 1. Feminine of 'Soṭā' & a
companion word of 'Moṭī'. ୨। ସ୍ଥୂଳକାୟା—
2. Corpulent or stout (female).

ସୋଡ଼କା—ଦେ. ବି ( ପ୍ର. ସୁର+କିମ୍ବା )—( ଧ୍ୱନ୍ୟନୁକରଣ )—
Soṛḍakā ୧ । ହାପୁରିବା; ପାଣିଆ ଖାଦ୍ୟ (ଯଥା—ଦହି
হাপরান सुरुकाइ ଆଦି)କୁ ଓଠ ଦ୍ୱାରା
ସଡ଼୍‌ ସଡ଼୍‌ଶବ୍ଦପୂର୍ବକ ଶୋଷିବା—1. (onomatopoeic)
Gulping down of a liquid food through
the lips by making smacking
হাপরা सुरुक सुरुक sounds. ୨ । ଥରେ
ହାପୁରିବାଦ୍ୱାରା ଯେତେ ପରିମିତ ପାଣିଆ ଖାଦ୍ୟ ପାଟି
ଭିତରକୁ ଯିବ; ଢୋକପା—2. A quantity of
liquid food which can enter into the
mouth with one gulping. [ଦ୍ର—ପାଣିଆଳିଆ
ଖାଦ୍ୟ ସୋଡ଼କାଏ—ଇତ୍ୟାଦି ] ବିଣ, ପୁଂ— ୧ । ଯେ
(ସେ ଡ଼କୀ—ସ୍ତ୍ରୀ) ସୋଡ଼କାପ୍ରଣାଳୀରେ ଖାଦ୍ୟ ଖାଏ—
सुरकनेवाला 1. Eating liquid food by
making smacking sound. [ଦ୍ର—ଏହା ଅନ୍ୟ
ଶବ୍ଦ ସହିତ ବ୍ୟବହୃତ ହୁଏ । ଯଥା—ଦହି ସୋଡ଼କା ।]
উড়উড়ে सरसरकरनेवाला ୨ । ଯେ ପାଟି ବା ନାକ
ଦ୍ୱାରା ସଡ଼ ସଡ଼ ଶବ୍ଦ କରେ—2. Making a
smacking or gurgling sound through
the throat or the nostrils. [ଦ୍ର—ଚୋଟିରେ
ବା ନାକରେ ବହୁପରିମିତ ଶ୍ଲେଷ୍ମା ପୂର୍ଣ୍ଣ ଥିଲେ
ନିଶ୍ୱାସ ମାରିବାବେଳେ ଏହି ଶବ୍ଦ ହୁଏ । ଯଥା—ନାକ
ସୋଡ଼କା ।]

ସୋଡ଼କା(କେ)ଇବା—ଦେ. କ୍ରି—୧ । ହାପୁରିବା; ପାଣିଆଦ୍ରବ୍ୟକୁ
Soṛḍakā(ke)ibā ସଡ଼ ସଡ଼ଶବ୍ଦପୂର୍ବକ ପାଟି ମଧ୍ୟକୁ
হাপরান सुरूकना, सुरकना ଶୋଷିବା—
1. To take liquid food into the mouth
উড উড করা सरसर करना with a smacking gulp.
୨ । ନାକ ବା ତଣ୍ଟିଦ୍ୱାରା ସଡ଼ ସଡ଼ ଶବ୍ଦ କରିବା—
2. To emit a smacking or gurgling
sound through the nostrils or the
throat.

ସୋଡ଼କାଏ—ଦେ. ବି. ଓ ବିଣ. ଓ କ୍ରି. ବିଣ—ଥରେ ସୋଡ଼କିବାପାଇଁ
Soṛḍakāe ଉପଯୁକ୍ତପରିମାଣର ( ପାଣିଆ ଖାଦ୍ୟ );
এক হাপরা एक सुरक ଢୋକପାଏ—
( A quantity of liquid food ) Just
sufficient to be taken into the mouth
with one smacking gurgle. (ଦ୍ର—ପାଣିଆଳିଆ
ଖାଦ୍ୟ ସୋଡ଼କାଏ—ଇତ୍ୟାଦି ।)

ସୋଡ଼କିବା—ଦେ. କ୍ରି—ସୋଡ଼କାଇବା ୧ ( ଦେଖ )—
Soṛḍakibā Soṛḍakāibā 1 ( See ) (ଦ୍ର—
[ସୋଡ଼କବେ(କେ)ବା - ଅନ୍ୟରୂପ] ଘୋଷକର ସୋଡ଼କବେଲେ
ମଦରସକୁ—କୃଷ୍ଣସିଂ. ମହାଭାରତ ଅଦି ।)

ସୋଡ଼କୀ—ଦେ. ବିଣ. ସ୍ତ୍ରୀ-୧ । ଯେ କୌଣସି ପାଣିଆ ବସ୍ତୁକୁ ସୋଡ଼କାଇ
Soṛḍakī କରି ଖାଏ—1. (a woman) Habituated to
सुरुकनेवाला eating things with a smacking sound.
[ଦ୍ର—ଏହି ଶବ୍ଦ ଅନ୍ୟ ଶବ୍ଦ ସହିତ ଲାଗେ । ଯଥା—
ঘড়ঘড়ে शरशर करनेवाला ଦହିସୋଡ଼କୀ । ]
୨ । ଯେ ସଡ଼ ସଡ଼ ଶବ୍ଦ କରେ—2. Emitting a
smacking or gurgling sound. ( ଦ୍ର—
ସିଂଘାଣିନାକୀ ଦହିସୋଡ଼କୀ ଅର୍ଦ୍ଧେଠା ପଖାଳ ଖାଏ—
ଇତ୍ୟାଦି ।)

ସୋଡ଼ା(ଡା)—ବୈଦେ. ବି (ଇଂ)—୧ । ସର୍ଜିକା କ୍ଷାର—1. Soda;
Sorḍā(ḍā) bicarbonate of Soda. ୨ ।
সোড়া सोड़ा ସୋଡ଼ା ଓ୍ୱାଟର୍ ( ଦେଖ )—
2. Sorḍā uāṭar (See).

ସୋଡ଼ା(ଡା) ଓ୍ୱାଟର୍ (ୱାଟର୍)—ବୈଦେ. ବି ( ଇଂ )—ସୋଡ଼ା ଓ
Sorḍā(ḍā) uāṭar(wāṭar) କାର୍ବନିକ୍ ଗ୍ୟାସ୍ ମିଶ୍ରିତ ଜଳ—
সোড়া ওয়াটর सोडा वाटर Soda water. [ଦ୍ର—ଏହା
ଖାଇଲେ ଉଦରରୁ ବାୟୁ ବାହାରି ହୋଇ ଖାଦ୍ୟ ହଜମ
ଓ ଖାଦ୍ୟ ଶୀଘ୍ର ହୁଏ । ]

ସୋଡ଼ା(ଡା)ଏସିଡ୍—ବୈଦେ. ବି (ଇଂ)—ସୋଡ଼ା ଓ କାର୍ବନିକ୍ ଏସିଡ୍
Sorḍā(ḍā) esid ମିଶ୍ରଣରେ ପ୍ରସ୍ତୁତ ଓ ଖାଦ୍ୟକାରିତକ
সোড়া এসিড় सोडाएसिड एକପ୍ରକାର ଚୂର୍ଣ୍ଣ—
Soda acid; carbonic acid and soda.
[ଦ୍ର—ଏହା ପାଣିରେ ପକାଇଲେ ପାଣି ଅଣ୍ଡାଳିଆ ମଧ୍ୟ
ବୁଡ଼ ବୁଡ଼ ହୋଇ ଉତୁଳିଉଠେ ।]

